# ଗପ ରୂପରେ ଗୀତା

ଲେଖକ :
ବାସୁଦେବ ମହାପାତ୍ର
ଲେଖକ ନିବାସ
କବିସୂର୍ଯ୍ୟନଗର - ୭୬୧୧୦୪



ପ୍ରକାଶକ :
କବିସୂର୍ଯ୍ୟ ପ୍ରତିଭା ପରିଷଦ
କବିସୂର୍ଯ୍ୟନଗର (ଗଞ୍ଜାମ)
ଦ୍ୱିତୀୟ ସଂସ୍କରଣ : ରଥଯାତ୍ରା, ୨୦୦୦

ପ୍ରଚ୍ଛଦ :
ଜଗନ୍ନାଥ ପ୍ରୋସେସ୍, କଟକ

ମୁଦ୍ରଣ :
ସିଦ୍ଧବୀର ଅଫ୍‌ସେଟ୍, ବ୍ରହ୍ମପୁର - ୩

ମୂଲ୍ୟ : ଦଶ ଟଙ୍କା

ପ୍ରାପ୍ତିସ୍ଥାନ : ଓଡ଼ିଶା ବୁକ୍ ଷ୍ଟୋର, ବିନୋଦବିହାରୀ, କଟକ
ବିଜୟ ବୁକ୍‌ଷ୍ଟୋର, ପୁରୁଣା ବସ୍‌ଷ୍ଟାଣ୍ଡ, ବ୍ରହ୍ମପୁର

(ଏହି ବହିର ବିକ୍ରୀଲବ୍ଧ ଧନ ସଦ୍‌ଗ୍ରନ୍ଥ ପ୍ରକାଶନରେ ବିନିଯୁକ୍ତ ହେବ ।)

## ✻ ଓଁ ତତ୍ ସତ୍ ✻

ଜୀବନର ନିତିଦିନିଆ କୁରୁକ୍ଷେତ୍ର ଯୁଦ୍ଧରେ ଠିଆ ହୋଇଥିବା ମଣିଷକୁ
ଗୀତା ଜରିଆରେ କର୍ତ୍ତବ୍ୟ ବୁଝାଉଥିବା ହେ ପ୍ରଭୁ ବାସୁଦେବ ଶ୍ରୀକୃଷ୍ଣ !

ମହାଭାରତ ଯୁଦ୍ଧ ତୁମେ ଭିଆଇଥିଲ । ଅର୍ଜୁନଙ୍କ ରଥରେ ସାରଥି ସାଜିଥିଲ । ତୁମେ ହିଁ ପାଣ୍ଡବମାନଙ୍କୁ ଜିତାଇଥିଲ; କୌରବମାନଙ୍କୁ ହରାଇଥିଲ । ଅସାହା ଦ୍ରୌପଦୀଙ୍କୁ ଅଚାନକଭାବେ ବସ୍ତ୍ର ଯୋଗାଇଦେଇଥିଲ ତୁମେନା ?

ମୋହ-ସୁଅରେ ପଡ଼ି ଅଣାୟତ୍ତଭାବେ ଭାସିଯାଉଛୁ ମୁଁ ଓ ମୋ ଭଳି ଅଗଣିତ ଭାଇଭଉଣୀ । ତୁମେ ଅନ୍ତର୍ଯ୍ୟାମୀ; ମନକଥା ସବୁ ଜାଣିଛ । ତୁମ ଛଡ଼ା ଆମର ସାହା ଆଉ କିଏ ଅଛି, କୁହ, ପ୍ରଭୁ । ଆଖିର ଲୁହ ଓ ଛାତିର କୋହକୁ ନେଇ ତୁମକୁ ଡାକୁଛୁ । ଟିକିଏ ଦୟା କର । ଆମକୁ ଏଇ ସୁଅ ପୁହଁରୁ ଉଠାଇ ନେଇ ତୁମ ପାଦ ତଳେ ପକାଇଦିଅ । ବାସ୍ ଏତିକି !

ନିତ୍ୟପ୍ରଣତ
**ବାସୁଦେବ**

# ସୂଚୀପତ୍ର

ଓଁ ଶ୍ରୀପରମାତ୍ମନେ ନମଃ

# ଗୀତା : କ'ଣ ଓ କାହିଁକି ?

କଥାରେ ଅଛି; ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ । ଏହାର ମାନେ ହେଲା, ଯାହା ମହାଭାରତରେ ନାହିଁ, ତାହା ଭାରତରେ ନାହିଁ । ମହାଭାରତ ଆମ ଦେଶର ଏକ ନାଁ ଥିବା ମହାପୁରାଣ । ବେଦବ୍ୟାସ ଋଷି ଏହାକୁ ରଚନା କରିଥିଲେ । ଏଥିରେ ଶିଖିବା କଥା ଭରି ହୋଇ ରହିଛି । କେବଳ ଶିଖିପାରିଲେ ହେଲା । ମହାଭାରତର ମୋଟାମୋଟି ଚରିତ ଏହିପରି :

ଧୃତରାଷ୍ଟ୍ର ଅନ୍ଧ ଥିଲେ । ତେଣୁ ହସ୍ତିନାପୁରର ରାଜା ହେଲେ ତାଙ୍କ ସାନ ଭାଇ ପାଣ୍ଡୁ । ପାଣ୍ଡୁଙ୍କର ପାଞ୍ଚ ପୁଅ : ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ । ସେମାନଙ୍କୁ ପାଣ୍ଡବ କୁହାଯାଉଥିଲା । ଧୃତରାଷ୍ଟ୍ରଙ୍କର ଦୁର୍ଯୋଧନ, ଦୁଃଶାସନ ଆଦି ଶହେ ପୁଅ ଥିଲେ । ସେମାନଙ୍କୁ କୌରବ କୁହାଯାଉଥିଲା ।

କିଛି ଦିନ ପରେ ପାଣ୍ଡୁ ରୋଗରେ ପଡ଼ି ମରିଗଲେ । ତାଙ୍କ ପରେ ଧୃତରାଷ୍ଟ୍ର ହସ୍ତିନାର ରାଜା ହେଲେ । କୌରବ ଓ ପାଣ୍ଡବଭାଇଙ୍କ ଭିତରେ ବୟସରେ ସବୁଠାରୁ ବଡ଼ ଥିଲେ ଯୁଧିଷ୍ଠିର । ସେ ଧର୍ମକୁ ମାନି ଚଳୁଥିଲେ । ତାଙ୍କୁ ବି ରାଜ୍ୟର ସବୁ ଲୋକ ଭଲ ପାଉଥିଲେ । ତେଣୁ ଧୃତରାଷ୍ଟ୍ର ତାଙ୍କୁ ହସ୍ତିନାର ଯୁବରାଜ କରିଦେଲେ ।

ପାଣ୍ଡବମାନେ ଧର୍ମବାଟରେ ଯାଉଥିଲେ । କିନ୍ତୁ ଧୃତରାଷ୍ଟ୍ରଙ୍କ ପୁଅମାନେ ଦୁଷ୍ଟ ଯେମିତି, ଗର୍ବୀ ସେମିତି । ବାପାଙ୍କ ପରେ ହସ୍ତିନାର ରାଜା ହେବା ପାଇଁ ଦୁର୍ଯୋଧନ ପାଞ୍ଚୁଥାନ୍ତି । ପାଣ୍ଡବମାନେ ଥିଲେ ସେ

ରାଜା ହେବେ କେମିତି ? ତେଣୁ ସେମାନଙ୍କୁ ନିପାତ କରିବାକୁ ସେ ବହୁତ ଚେଷ୍ଟା କଲେ । ଶେଷରେ ସେ କପଟ କରି ଯୁଧିଷ୍ଠିରଙ୍କ ସହିତ ପଶା ଖେଳିଲେ । ଯୁଧିଷ୍ଠିର ପଶାଖେଳରେ ହାରିଗଲେ । ଖେଳର ବାଜି ଅନୁଯାୟୀ ପାଣ୍ଡବମାନେ ବାର ବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତବାସ କଲେ ।

ତେର ବର୍ଷ ଧରି ପାଣ୍ଡବମାନେ ବହୁତ୍ କଷ୍ଟ ପାଇଲେ । ଶେଷରେ ସେମାନେ ହସ୍ତିନାକୁ ଫେରିଆସି ରାଜ୍ୟର ଅଧା ଭାଗ ଦାବୀ କଲେ । ଦୁର୍ଯ୍ୟୋଧନ କହିଲେ - ରାଜ୍ୟ ଦେବା ତ ଦୂରର କଥା, ବିନା ଯୁଦ୍ଧରେ ତୁମକୁ ଛୁଞ୍ଚମୁନ ଆକାରର ଭୂଇଁ ଟିକିଏ ବି ଦେବୁ ନାହିଁ ।

ପାଣ୍ଡବଙ୍କ ମା' ଥିଲେ କୁନ୍ତୀ । କୌରବଙ୍କ ଦୁଷ୍ଟାମି କଥା ଗୋଟିଏ ପରେ ଗୋଟିଏ ତାଙ୍କର ମନେ ପଡ଼ିଲା । ପୁଅ ଭୀମକୁ ମାରିବା ପାଇଁ ବିଷ ଲଡୁ ଖୁଆଇଥିଲେ । ତାଙ୍କ ପାଞ୍ଚ ପୁଅ ସହ ତାଙ୍କୁ ଜଉଘରେ ପୂରାଇ ନିଆଁ ଲଗାଇ ଦେଇଥିଲେ । ତାଙ୍କ ବୋହୂ ଦ୍ରୌପଦୀଙ୍କୁ ରାଜସଭାରେ ଉଲଗ୍ନ କରିବାକୁ ଯାଉଥିଲେ । ଭଗବାନ ଶ୍ରୀକୃଷ୍ଣ ସାହା ହେବାରୁ ତାଙ୍କ ପୁଅମାନେ ଏତେ ଏତେ ବିପଦରୁ ରକ୍ଷା ପାଇଲେ । ଖାଲି କଣ ସେତିକି ? ଶ୍ରୀକୃଷ୍ଣ ନିଜେ କୌରବମାନଙ୍କୁ କେତେ ବୁଝାଇଲେ - ଆରେ ବାବୁ, ଯୁଦ୍ଧ କରନି, ସନ୍ଧି କର । ସେମାନେ ତାଙ୍କ କଥା ଶୁଣନ୍ତେ କିଆଁ ? ଓଲଟି ସେମାନେ ଶ୍ରୀକୃଷ୍ଣଙ୍କୁ ବନ୍ଦୀ କରିବାକୁ ଫନ୍ଦି କରିଥିଲେ ।

କୌରବମାନଙ୍କ ଅଧର୍ମ ବହୁତ ବଢ଼ିଗଲା । ଏଣେ ଦୁର୍ଯ୍ୟୋଧନ ଯୁଦ୍ଧର ଡାକ ଦେଉଥାନ୍ତି । କୁନ୍ତୀ ଛାତିକୁ ପଥର କରି ଏଯାଏଁ ସବୁ କଥା ସହି ଆସିଥିଲେ । କିନ୍ତୁ ଏଣିକି ଆଉ ପାରିଲେନି । ସେ ପୁଅମାନଙ୍କୁ ଖୋଲାଖୋଲି ଭାବେ ଶୁଣାଇଦେଲେ - ମୁଁ ତୁମ ମା' କୁନ୍ତୀ କହୁଛି, ତୁମେମାନେ ଯୁଦ୍ଧ ପାଇଁ ଆଗେଇଯାଅ ।

ଚାହୁଁ ଚାହୁଁ କୁରୁକ୍ଷେତ୍ରରେ ଦୁଇ ପଟର ସେନା ଯୁଦ୍ଧ ପାଇଁ ଠିଆ ହୋଇଗଲେ । ଭୀଷ୍ମ ଥିଲେ ପାଣ୍ଡବ ଓ କୌରବଙ୍କ ଜେଜେବାପା । ଦ୍ରୋଣ

ଓ କୃପାଚାର୍ଯ୍ୟ ଥିଲେ ସେମାନଙ୍କ ଗୁରୁ । ଏମାନେ ରହିଲେ ଦୁର୍ଯ୍ୟୋଧନଙ୍କ ପଟେ । ତା'ଛଡ଼ା ପାଣ୍ଡବ ଓ କୌରବଙ୍କ ବନ୍ଧୁବାନ୍ଧବମାନେ ବାଣ୍ଟି ହୋଇ ଦୁଇ ପଟେ ରହିଲେ ।

କଥା ଦେଖିଲେ, ଏଇଟି ଥିଲା ଧର୍ମଯୁଦ୍ଧ । ଦୁର୍ଯ୍ୟୋଧନଙ୍କ ପଟେ ଥିଲା ଅଧର୍ମ ଓ ଅନ୍ୟାୟ । ପାଣ୍ଡବମାନଙ୍କ ପଟେ ଥିଲା ଧର୍ମ ଓ ନ୍ୟାୟ । ସେଥିପାଇଁ ଶ୍ରୀକୃଷ୍ଣ ପାଣ୍ଡବଙ୍କ ପଟେ ରହିଲେ । ସେ ତାଙ୍କ ସଖା ଅର୍ଜୁନଙ୍କ ରଥରେ ସାରଥି ହୋଇଥାନ୍ତି । ଠିକ୍ ସମୟରେ ସେ ଦୁଇ ପକ୍ଷର ସେନାଙ୍କ ମଝିରେ ଅର୍ଜୁନଙ୍କ ରଥକୁ ନେଇ ଠିଆ କରିଦେଲେ ।

କୌରବ ସେନା ଆଡ଼େ ଆଖି ବୁଲାଇ ଆଣିଲେ ଅର୍ଜୁନ । ଯାହା ଦେଖିଲେ, ସେଥିରେ ତାଙ୍କ ମନ ବଦଳିଗଲା । ସେ ଭାବିବାକୁ ଲାଗିଲେ- ମୁଁ କାହା ସହିତ ଯୁଦ୍ଧ କରିବି ? ଆଗରେ ମୋର ଅତି ଆପଣାର ଜେଜେବାପା, ଗୁରୁ, ଭାଇ, ମାମୁ, ବନ୍ଧୁବାନ୍ଧବ ଠିଆ ହୋଇଛନ୍ତି । ଏମାନଙ୍କୁ ମୁଁ ମାରିବି କେମିତି ? ମାରିଲେ ମୋତେ ଭୟଙ୍କର ପାପ ଲାଗିବ । ତା ଲାଗି ମୁଁ ନର୍କରେ ପଡ଼ି କଷ୍ଟ ଭୋଗିବି ।

ଏ ସେହି ଅର୍ଜୁନ । କୌରବମାନଙ୍କ ଅନ୍ୟାୟ, ଅତ୍ୟାଚାର ଏ ସହିପାରି ନ ଥିଲେ । ପୁଣି ମା' କୁନ୍ତୀ ଓ ଶ୍ରୀକୃଷ୍ଣ ଯୁଦ୍ଧ କରିବାକୁ ତାଙ୍କୁ କହିଛନ୍ତି । ତାହା ନ କଲେ ତାଙ୍କର ଅଧର୍ମ ହେବ । ଏହା ଭାବି ସେ ଯୁଦ୍ଧକୁ ଡ଼େଇଁ ପଡ଼ିଥିଲେ ।

ଏବେ ହେଲା କ'ଣ ? ଯୁଦ୍ଧ ପଡ଼ିଆରେ ଠିଆ ହୋଇ ନିଜ ପରିବାର ଓ ବନ୍ଧୁବାନ୍ଧବଙ୍କ କଥା ସେ ଭାବିବାକୁ ଲାଗିଲେ । ଏଇ ମୋହ ତାଙ୍କୁ କାବୁ କରିଦେଲା । ସେ ଶ୍ରୀକୃଷ୍ଣଙ୍କୁ କହିଲେ - ଯାହା ହେବ, ହେଉ । ମୁଁ ଜମା ଯୁଦ୍ଧ କରିବି ନାହିଁ । ଯୁଦ୍ଧ କରି ନିଜ ବଂଶ ବୁଡ଼ାଇବି କାହିଁକି ? ତା'ଲାଗି ନର୍କ ଭୋଗିବି କାହିଁକି ?

ତା'ପରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଅନେକ କଥା ବୁଝାଇଲେ । ଅର୍ଜୁନ ତାଙ୍କୁ ଗୋଟାଏ ପରେ ଗୋଟାଏ ପ୍ରଶ୍ନ ପଚାରୁଥାନ୍ତି । ଶ୍ରୀକୃଷ୍ଣ ତାଙ୍କୁ

ସେସବୁର ଉତ୍ତର ଦେଉଥାନ୍ତି । ତା'ଛଡ଼ା ସେ ଉପଦେଶ ଛଳରେ ଅର୍ଜୁନଙ୍କୁ ଅନେକ ଗହନ କଥା ବୁଝାଉଥାନ୍ତି । ସେ ତାଙ୍କ ଜାଗା ଛାଡ଼ି ଏ ମର୍ତ୍ତ୍ୟପୁରକୁ କାହିଁକି ଆସନ୍ତି, ଏ କଥା ବୁଝାଇବାକୁ ଯାଇ କହିଲେ -

ଧର୍ମହାନି ହୋଇ ଅଧର୍ମ ଯେବେ ବଢ଼େ, ଅର୍ଜୁନ,
ସେହି କାଳେ ମୁହିଁ ମହୀରେ ଅବତରଇ, ଜାଣ ।
ରକ୍ଷା କରି ସାଧୁ ଜନରେ ନାଶିବାକୁ ଦୁର୍ଜନ
ଧର୍ମ ସଂସ୍ଥାପନ ପାଇଁ ମୁଁ ଯୁଗେ ଯୁଗେ ଜନମ ।

(ଗୀତା : ଅଧ୍ୟାୟ -୧, ଶ୍ଳୋକ ୭ - ୮ : ଭାବାନୁବାଦ)

ଶେଷରେ ଶ୍ରୀକୃଷ୍ଣ ତାଙ୍କ ବିଶ୍ୱରୂପ ଦେଖାଇଲେ । ଅର୍ଜୁନଙ୍କ ମୋହ ଭାଙ୍ଗିଗଲା । ତାଙ୍କ ମନ ବୁଝିଗଲା । ଏସବୁ ହେଲା ଗୀତାର କଥା । ମହାଭାରତର ଭୀଷ୍ମ ପର୍ବରେ ଗୀତା କଥା ଅଛି ।

ଗୀତାର ଏମିତି ନାଁ କାହିଁକି ହେଲା, ଜାଣିଛ ? ଖୁସି ହେଲେ ଆମ ମୁହଁରୁ ଛାଏଁ ପଦେ ଦି' ପଦ ଗୀତ ବାହାରିଆସେ । ଭଗବାନ ଶ୍ରୀକୃଷ୍ଣଙ୍କ ମୁହଁରୁ ଖୁସିରେ ଏସବୁ ନୀତିକଥା ବାହାରିଥିଲା । ସେଥିପାଇଁ ଏହାର ନାଁ ହେଲା ଭଗବଦ୍ ଗୀତା ।

କେହି ହୁଏତ ପଚାରିବେ - ଗୀତାରେ କ'ଣ ଅଛି ?

ତାର ଉତ୍ତର ହେବ ଆଉ ଏକ ପ୍ରଶ୍ନ - ଗୀତାରେ କଣ ନାହିଁ ?

ଅବାଟରେ ଯିବା ଲୋକକୁ ଗୀତା ବାଟ ଦେଖାଏ । ସବୁ ମଣିଷ ପାଇଁ ଏହା ଆବଶ୍ୟକ । ଏଠି ଜାତିଧର୍ମର ପ୍ରଶ୍ନ ନାହିଁ । ଛୋଟବଡ଼ର ବିଚାର ନାହିଁ ଏଠି । ବାଳକ ବାଳିକା, ଯୁବକ ଯୁବତୀ, ବୁଢ଼ାବୁଢ଼ୀ ସମସ୍ତେ ଏହା ପଢ଼ି ଉପକାର ପାଇପାରିବେ । ହଁ, ପାଠକମାନେ ଗୋଟାଏ କଥା ମନେ ରଖିବା ଉଚିତ । ସେମାନେ ଯେମିତି ପଢ଼ିବା ବିଷୟ ବୁଝିବେ, ଆଉ ବୁଝିବା ବିଷୟ ଧୀରେ ଧୀରେ କାମରେ ଲଗାଇ ଚାଲିବେ ।

ଆମ ଦେଶର ଅଧିକାଂଶ ଲୋକ ଗୀତା ବିଷୟରେ କିଛି ଜାଣନ୍ତି ନାହିଁ । ଏପରିକି ଆମ ସ୍କୁଲ କଲେଜର ଛାତ୍ରଛାତ୍ରୀମାନେ ବି ଏହା ଜାଣିବାକୁ ଆଗ୍ରହୀ ହୁଅନ୍ତି ନାହିଁ । ଏ ବହିଟି ଏ ସମସ୍ତ ଲୋକଙ୍କ ପାଇଁ, ଗୀତା ପଢ଼ି ବୁଝୁଥିବା ଲୋକଙ୍କ ପାଇଁ ନୁହେଁ । ଏଠି ଗପ ଆକାରରେ ଗୀତାର ସାରକଥା ଟିକେ ଟିକେ ଦିଆଯାଇଛି । ଅଠର ଗୋଟି ଅଧ୍ୟାୟ ପାଇଁ ଅଠର ଗୋଟି ଗପ ଅଛି ଏଥିରେ । ଓଡ଼ିଆରେ କଥାଟିଏ ଅଛି : ନାହିଁ ମାମୁଠୁ କଣା ମାମୁ ଭଲ । ସେମିତି, ମୋଟେ ନ ଜାଣିବାଠଉଁ କିଛି ଜାଣିବା ଭଲ । ଗୀତା ପଢ଼ିବାକୁ ଆଗ୍ରହ ସୃଷ୍ଟି କରିବା ପାଇଁ ଏ ବହିଟି ଲେଖାଯାଇଛି । ସେତିକି ହୋଇପାରିଲେ ଯଥେଷ୍ଟ । ଅଳ୍ପ ଜାଣି ମୁଁ ଅଧିକ କଣ ଅବା କହିପାରିବି ?

ଶେଷରେ ନିହାତି ସତ କଥାଟିଏ କହୁଛି । ଆମ ଘରକରଣାରେ ଆମେ କେତେ ପ୍ରକାର ଖର୍ଚ୍ଚ କରୁଥାଇଁ । କେତେକ ଖର୍ଚ୍ଚ ଅଲୋଡ଼ା ହେଲେ ମଧ ଆମେ ତାହା କରିବାକୁ ପଛାଉ ନାହିଁ । ଆଉ କେତେ ବାବଦରେ ମଧ ଅଯଥା ଅଧିକ ଖର୍ଚ୍ଚ କରିଥାଉଁ । ବୁଝିଲ ଦେଖି, ଭଲ ବହିଟିଏ କିଣି ପଢ଼ିବା ତା'ଠଉଁ କେତେ ଭଲ । ତାହା ନିଜ ପାଇଁ ଓ ଘର ଲୋକଙ୍କ ପାଇଁ ସବୁ ଦିନ ପାଇଁ ଭଲ ।

ଭଲ ବହି ବି ଆମର ଜଣେ ଗୁରୁ । ଏ ଗୁରୁ ସବୁବେଳେ ଆମ ପାଖେ ପାଖେ ଥାଆନ୍ତି । ଆମେ ଚାହିଁଲେ ଆମକୁ ସାଙ୍ଗେ ସାଙ୍ଗେ ଶିକ୍ଷା ଦିଅନ୍ତି । ଏଥିପାଇଁ ଘରେ ପୋଥି ପୂଜାର ଚଳଣି ଅଛି ।

ତେଣୁ ଭଲ ଭଲ ବହି କିଣିବା ଅଭ୍ୟାସ କର । ତାହା ମନ ଦେଇ ପଢ଼ । ତୁମେ ସୁଖୀ ହୁଅ । ସଭିଏଁ ସୁଖୀ ହୁଅନ୍ତୁ ।

ବିନୀତ

ଲେଖକ

## ଅଧ୍ୟାୟ - ୧

# ମୁଁ କ'ଣ କରିବି ?

ଜଣେ ଶେଠ ଥିଲେ । ସେ ଧନୀ ଯେମିତି, ଧାର୍ମିକ ସେମିତି । ତାଙ୍କର ଦୁଇ ପୁଅ । ବଡ଼ ପୁଅ ଘରଧନ୍ଦାରେ ଜମା ମନ ଦିଏ ନାହିଁ । ସାଧୁସନ୍ଥଙ୍କ ମେଳରେ ଦିନ ବିତାଏ । ଦିନେ ଶେଠ ବଡ଼ପୁଅକୁ ଡ଼ାକି କହିଲେ - ଦେଖ, ମୁଁ ଆସି ବୁଢ଼ା ହେଲିଣି । ଆଉ ପାରୁନି । ତୁ' ଘରର ବଡ଼ପୁଅ । ଏଣିକି ବେପାର ବଣିଜରେ ଟିକେ ମନ ଦେ ।

ବଡ଼ ପୁଅ ଭାବିଲା - କି ମୁସ୍କିଲ କଥା ! ମୁଁ ଭଗବାନଙ୍କଠି ମନ ଦେଇଛି । ବାପା ମୋତେ ଘର ଜଞ୍ଜାଳ ଭିତରକୁ ଟାଣୁଛନ୍ତି କାହିଁକି ? ମୁଁ କ'ଣ କରିବି ?

ଶେଠଙ୍କ ସାନପୁଅ ଭାରି ଚତୁର । ମଥା ଖଟାଇ ବେପାର କରେ । ସେଥିରୁ ମୋଟା ଟଙ୍କା ପାଏ । ଥରେ ଚାଉଳ ଦର ବଢ଼ିଗଲା । ସେ ଚଢ଼ା ଦରରେ ଚାଉଳ ବିକି ବହୁତ ଲାଭ କଲା । ତାହା ଦେଖି ଶେଠ ତାକୁ କହିଲେ - ତୁ ଠିକ୍ କାମ କରିନାହୁଁ । ଟଙ୍କାରେ ପାଞ୍ଚ ପଇସା ହିଁ ଆମର ଲାଭ ନେବା କଥା । ଅଧିକ ଲାଭ ନେଲେ ଗରିବ ଲୋକଙ୍କୁ ବାଧିବ । ସେଥିରେ ଅଧର୍ମ ହେବ । ସବୁବେଳେ କେବଳ ବେପାର ଓ ଘରଧନ୍ଦାରେ ମନ ଦେବା ବି ଠିକ୍ ନୁହେଁ । ଏଣିକି ଭଗବାନଙ୍କଠି ମନ ଲଗା' ।

ସାନପୁଅ ଭାବିଲା - ବେପାରର ମୂଳ କଥା ହେଲା ଲାଭ । ତା' ନ ହେଲେ ଘର ଚଳିବ କେମିତି ? ଭଗବାନଙ୍କଠାରେ ମନ ଦେଲେ ସେ କ'ଣ ଆସି ଆମ ଘର ଚଳାଇନେବେ ? ବାପା ଏମିତି କଣ କହୁଛନ୍ତି ? ମୁଁ କଣ କରିବି ?

ଶେଠ ଦୁଇ ପୁଅଙ୍କୁ ଅଲଗା ଅଲଗା କଥା କାହିଁକି କହିଲେ, ବୁଝୁଛ ? ସେ ଚାହୁଁଥିଲେ, ତାଙ୍କ ପୁଅମାନେ ଭଲ ମଣିଷ ହୁଅନ୍ତୁ । ସେମାନେ ନିଜ କର୍ତ୍ତବ୍ୟ କଥା ଭଲଭାବେ ବୁଝନ୍ତୁ । ଘରଧନ୍ଦା ବୁଝିଲେ ବି ତା' ଭିତରେ ବୁଡ଼ି ନ ଯାଆନ୍ତୁ । ଭଗବାନଙ୍କଠି ସେମାନଙ୍କ ମନ ରହିଥାଉ ।

ଶେଠଙ୍କ ଦୁଇ ପୁଅ ସେମିତି କଲେ । ଶେଠ ଖୁସି ହେଲେ ।

ଗପ ଶେଷ ହେଲା । ତେବେ ଏ ଗପରୁ ଆମେ ଶିଖିବା କ'ଣ ?

ଶେଠଙ୍କ ପୁଅ ପରି ମଣିଷ ବେଳେବେଳେ ଅଡୁଆରେ ପଡ଼ିଯାଏ । ସେ ନିଜକୁ ପଚାରେ - ମୁଁ କଣ କରିବି ? ଆଉ, କଣ କରିବିନି ? ତା' ମନ ସନ୍ଦେହରେ ବୁଡ଼ିଯାଏ । ମୋ ଘର, ମୋ ବାପା ମା, ମୋ ସ୍ତ୍ରୀ, ମୋ ପୁଅଝିଅ,ମୋ ଭାଇଭଉଣୀ, ଏସବୁ ହେଲା ମୋପଣିଆ । ଏଇ ମୋପଣିଆକୁ ମୋହ କହନ୍ତି । ମୋହ ଯୋଗୁଁ ଆମେ କଣ କରିବା କଥା, ତାହା ଠିକ୍ କରିପାରୁ ନାହୁଁ । ଆମେ ବିଷମ ସନ୍ଦେହରେ ପଡ଼ିଯାଉଁ । ଘର ସଂସାର କରିଥିବା ଓ ଭଗବାନଙ୍କଠାରେ ବିଶ୍ୱାସ ଥିବା ଲୋକଙ୍କ ମନରେ ସାଧାରଣତଃ ଏ ପ୍ରକାର ପ୍ରଶ୍ନ ଉଠେ ।

ମଣିଷ ଭାବେ, ମୋର କର୍ତ୍ତବ୍ୟ, ମାନେ ମୋର ଯାହା କରିବା କଥା, ତାହା ନ କଲେ ମୋର ଅଧର୍ମ ହେବ । ମୁଁ ଯଦି କେବଳ ଘରଧନ୍ଦାରେ ମନ ଦିଏ, ତାହାହେଲେ ଭଗବାନଙ୍କଠାରେ ମୋ ମନ ଲାଗିବ ନାହିଁ । ତା' ଫଳରେ ମୁଁ ମଲା ପରେ ନର୍କରେ ପଡ଼ି କଷ୍ଟ ଭୋଗିବି । ଘରେ ରହି ଘରକଥା ଜମା ନ ବୁଝିବା ବି ଠିକ୍ ହେବ ନାହିଁ । ସେମିତି ହେଲେ ବି ମୋତେ ପାପ ଲାଗିବ । ତାହାହେଲେ ମୁଁ କରିବି କଣ ?

କଥା ହେଲା, ସଭିଏଁ ନିଜର ମଙ୍ଗଳ ଚାହାଁନ୍ତି । ହେଲେ ମୋହ ଯୋଗୁଁ ନିଜ ସୁଖ ପାଇଁ ଆମେ ଘର ଜଞ୍ଜାଳ ଭିତରେ ବୁଡ଼ି ରହୁ । ଆମ କର୍ତ୍ତବ୍ୟ କଥା ଭୁଲିଯାଉ ।

ଯୁଦ୍ଧ ପୂର୍ବରୁ ଠିକ୍ ଏମିତିକା ସନ୍ଦେହ ଅର୍ଜୁନଙ୍କୁ କାବୁ କରି ଦେଇଥାଏ । ସେ ମନକୁ ମନ ପଚାରୁଥାନ୍ତି - ମୁଁ କଣ କରିବି ? ଆଉ, କଣ କରିବିନି ? ଯୁଦ୍ଧ କରି ନିଜ ଲୋକଙ୍କୁ ମାରିଲେ ମୋତେ ପାପ ଲାଗିବ । ପୁଣି କ୍ଷତ୍ରିୟ ହୋଇ ଯୁଦ୍ଧ ନ କଲେ ପାପ ଲାଗିବ ।

ଅର୍ଜୁନଙ୍କ ମଥା ଘୂରିଗଲା । ସେ ଶ୍ରୀକୃଷ୍ଣଙ୍କୁ କହିଲେ - ମୋ ଗୋଡ଼ହାତ ଥରୁଛି । ମୋତେ ଭୟ ଲାଗୁଛି । ମୋର୍ ଜିତିବା ଦରକାର ନାହିଁ । ମୁଁ ଭିକ ମାଗି ପେଟ ପୋଷିବି । କୌରବମାନେ ଚାହିଁଲେ ମୋତେ ମାରି ଦିଅନ୍ତୁ । ମୁଁ ଜମା ଯୁଦ୍ଧ କରିବି ନାହିଁ ।

ଗୀତାର ପ୍ରଥମ ଅଧ୍ୟାୟରେ ଶ୍ରୀକୃଷ୍ଣ କିଛି କହିନାହାନ୍ତି । ଅନ୍ୟ ଅଧ୍ୟାୟରେ ତାଙ୍କୁ ସବୁ କଥା ବୁଝାଇ କହିଛନ୍ତି ।

ଅର୍ଜୁନ ମଣିଷ । ସେ ଜୀବାତ୍ମା । ଶ୍ରୀକୃଷ୍ଣ ଭଗବାନ । ସେ ପରମାତ୍ମା । ଆତ୍ମା ପରମାତ୍ମାଙ୍କ ଏକ ଅଂଶ । ବୁଝିବାକୁ ଗଲେ ଦିହେଁ ଏକ । କେବଳ ଏତିକି ତଫାତ୍ ଜୀବାତ୍ମା ମୋହରେ ପଡ଼ି ଦେହକୁ ମୁଁ ବୋଲି ଧରିନିଏ । ଦେହ ନଷ୍ଟ ହେବା ପରେ ପୂର୍ବଜନ୍ମ କଥା ପୂରା ଭୁଲିଯାଏ । କିନ୍ତୁ ପରମାତ୍ମା କେବେ ମୋହରେ ପଡ଼ନ୍ତି ନାହିଁ । ଯେତେବେଳେ ଆବଶ୍ୟକ ହୁଏ, ସେ ନିଜ ଇଚ୍ଛାରେ ଦେହ ଧରନ୍ତି ଓ ଛାଡ଼ନ୍ତି । ଦେହ ଛାଡ଼ିବା ପରେ ବି ସେ ପୂର୍ବର ସବୁ କଥା ମନେ ରଖିଥାନ୍ତି । ଏଠି ଶ୍ରୀକୃଷ୍ଣ ହେଲେ ଗୁରୁ, ଅର୍ଜୁନ ହେଲେ ତାଙ୍କ ଶିଷ୍ୟ ଏବଂ ଗୀତାର ବିଷୟ ଗୁରୁଙ୍କ ଉପଦେଶ ।

★★★

# ଅଧ୍ୟାୟ - ୨

# 'ମୁଁ କିଏ', ବୁଝ

ମିଥିଳା ରାଜ୍ୟର ରାଜା ଥିଲେ ଜନକ । ଦିନେ ରାତିରେ ଶୋଇଥିବାବେଳେ ସେ ଏକ ଅଜବ ସ୍ୱପ୍ନ ଦେଖିଲେ । ଶତ୍ରୁ ତାଙ୍କ ରାଜ୍ୟ ଆକ୍ରମଣ କରି ତାଙ୍କୁ ରାଜ୍ୟରୁ ତଡ଼ି ଦେଇଛି । ସେ ଭିକାରୀ ପାଲଟି ଯାଇଛନ୍ତି । ବଣ ବାଟରେ ଚାଲି ଚାଲି ଥକି ପଡ଼ିଛନ୍ତି । ପେଟରେ ତାଙ୍କର ଅସମ୍ଭାଳ ଭୋକ ।

ଜନକ ବଣ ପାରି ହୋଇ ଅନ୍ୟ ଏକ ରାଜ୍ୟରେ ପହଞ୍ଚିଲେ । ଠାଏଁ ଭୋଜି ହେଉଥାଏ । ସେଠି ଭିକାରୀ ଜନକଙ୍କୁ ପଚାରେ କିଏ ? ଭୋଜି ଶେଷରେ ଜନକ ବିକଳରେ କିଛି ଖାଦ୍ୟ ପାଇଁ ହାତ ପତେଇଲେ । କେହି ଜଣେ ଆସି ହଣ୍ଡା ତଳର ପୋଡ଼ି ଯାଇଥିବା ଭାତର ପୁଡ଼ିଆଟିଏ ତାଙ୍କୁ ଦେଲା । ସେ ଖାଇବାକୁ ଯାଉଛନ୍ତି, ଚିଲଟିଏ ଉଡ଼ିଆସି ତାଙ୍କ ହାତରୁ ତାହା ଝାମ୍ପି ନେଇଗଲା । ଜନକ ଚିତ୍କାର କରି ଉଠିଲେ ।

ଏତିକିବେଳେ ତାଙ୍କ ନିଦ ଭାଙ୍ଗିଗଲା । ରାଣୀ ଓ ଦାସୀମାନେ ତାଙ୍କୁ ଘେରିଯାଇ ପଚାରିଲେ - କଥା କ'ଣ ?

ଜନକ କେବଳ ଏତିକି କହିଲେ - କେଉଁଟି ସତ ?

ଜନକ ଏଣିକି ଭାବିବାକୁ ଲାଗିଲେ - ମୁଁ ରାଜା ଥିବା କଥା ସତ, ନା ମୁଁ ଭିକାରୀ ଥିବା କଥା ସତ ?

ତାଙ୍କ ମନ ଆଉ କେଉଁଥିରେ ଲାଗିଲା ନାହିଁ । ସେ ଦିନରାତି କେବଳ ଏଇ ଚିନ୍ତାରେ ବୁଡ଼ି ରହିଲେ ।

ଦିନେ ଅଷ୍ଟାବକ୍ର ଋଷି ତାଙ୍କ ରାଜସଭାରେ ପହଞ୍ଚିଲେ । ଜନକ ଉଦାସ ଥିବା ଦେଖି ସେ ତାଙ୍କୁ ସବୁ କଥା ପଚାରି ବୁଝିଲେ । ସେଠୁ ଅଷ୍ଟାବକ୍ର କହିଲେ - ଜ୍ଞାନୀ ହୋଇ ବି ତୁମେ ନିଜକୁ ଏଯାଏଁ ଚିହ୍ନି ପାରିନାହଁ । ହେଉ, ଶୁଣ । ତୁମେ ଏବେ ମିଥିଳାର ରାଜା ଅଛ । ସ୍ୱପ୍ନରେ ଭିକାରୀ ରୂପରେ ତୁମେ ହିଁ ଥିଲ । ରାଜା ହୁଅ, କି ଭିକାରୀ ହୁଅ, ତୁମେ ହେଲ ଏକ ଜୀବାତ୍ମା । ତୁମେ ସବୁବେଳେ ସମାନ ଭାବରେ ଅଛ । କେବଳ ତୁମ ଦେହ ବଦଳୁଛି, ରୂପ ବଦଳୁଛି, ପରିସ୍ଥିତି ବଦଳୁଛି ।

ଜନକ ଏବେ ନିଜକୁ ଠିକ୍‌ଭାବେ ବୁଝିପାରିଲେ । ସେ ବୁଝିଗଲେ, ତାଙ୍କ ରାଜା ରୂପ ମିଛ, ଭିକାରୀ ରୂପ ମିଛ । ସେ ଦେହ ନୁହନ୍ତି, ସେ ଆତ୍ମା । ଆତ୍ମା ବଦଳେ ନାହିଁ, କି ନଷ୍ଟ ହୁଏ ନାହିଁ ।

ଆମେ ମା' ପେଟରେ ଗୋଟିଏ ଘଟ ବା ଦେହ ପାଉ । ଏଇ ଘଟ ପିଲା ହୋଇ ଜନ୍ମ ନିଏ । ଧୀରେ ଧୀରେ ବଢ଼େ । ଯୁବକ କି ଯୁବତୀ ହୁଏ । ତାପରେ ବୁଢ଼ା କି ବୁଢ଼ୀ ହୁଏ । ବୟସକୁ ନେଇ ଦେହର ଆକାର, ଚେହେରା ବଦଳୁଥାଏ । କିନ୍ତୁ ଆମ ଦେହ ବା ଘଟରେ ଥିବା ଆତ୍ମା ବଦଳେ ନାହିଁ । ଦେହ ନଷ୍ଟ ହେବା ଜିନିଷ । ଏହାର ଆୟୁର ସୀମା ଅଛି । ଆୟୁ ଶେଷ ହେଲେ ଦେହ ମରିଯିବ । ମାଟିରେ ମିଶିଯିବ । କିନ୍ତୁ ଆତ୍ମା ଅମର । ଏହାର ଶେଷ ନାହିଁ । ପାଣି, ନିଆଁ, ପବନ କି ଅସ୍ତ୍ରଶସ୍ତ୍ର ଆତ୍ମାକୁ ମାରିପାରିବ ନାହିଁ ।

ମନେ ପକାଅ, ଆମ ପୋଷାକ ଚିରିଗଲେ ପୁରୁଣାଟିକୁ ଫୋପାଡ଼ିଦେଇ ନୂଆ ପୋଷାକଟିଏ ପିନ୍ଧୁ । ସେମିତି ଆମ ଦେହ ମରିବା ପରେ ଆମେ (ଆମ ଆତ୍ମା) ଆଉ ଗୋଟିଏ ଦେହ ନେଉ ।

ଆଖି, ନାକ, କାନ, ଜିଭ, ଚମ, ହାତ, ଗୋଡ଼ ଆଦି ହେଲେ ଆମ ଦେହର ଇନ୍ଦ୍ରିୟ । ଏମାନଙ୍କ ଦେହି ସଂସାରର ଯେତେ କାମ ହୁଏ । କାମ ସଫଳ ହେଲେ ଆମ ମନ ଖୁସି ହୁଏ, ବିଫଳ ହେଲେ ଦୁଃଖୀ ହୁଏ । ଏଇ ମନ ଦେହକୁ ହିଁ ମାଲିକ ବୋଲି ଭାବେ । ଆତ୍ମା କିଏ, ତାହା ମନ

ବୁଝେ ନାହିଁ । ଭଲମନ୍ଦ ବିଚାର କରିବା ଶକ୍ତିକୁ ବିବେକ କୁହାଯାଏ । ଏ ଶକ୍ତି ମନର ନାହିଁ । ତେଣୁ ବିବେକକୁ ଉଚ୍ଚ ସ୍ଥାନ ଦିଅ । ଶାସ୍ତ୍ରର ନିୟମ ମାନି କାମ କରିଯାଅ । କାମର ଫଳରେ ଆଶା ରଖ ନାହିଁ । ତାହା ଭଗବାନଙ୍କ ଉପରେ ଛାଡ଼ିଦିଅ । ଫଳକୁ ନେଇ ସୁଖୀ କି ଦୁଃଖୀ ହୁଅ ନାହିଁ । ଏମିତି କଲେ ତୁମେ ଶାନ୍ତି ପାଇବ ।

ପିଲାମାନେ ଗୀତାର କଥା କାମରେ ଲଗାନ୍ତୁ । ସେମାନେ ମନ ଲଗାଇ ପାଠ ପଢ଼ନ୍ତୁ । ପରୀକ୍ଷା ଫଳ ଭଲ ହେଲେ ଫୁଲି ଉଠନ୍ତୁ ନାହିଁ । ଫଳ ଖରାପ ହେଲେ ଦବି ଯାଆନ୍ତୁ ନାହିଁ । କାରଣ ମନ ଲଗାଇ ପାଠ ପଢ଼ିବା ସେମାନଙ୍କ ହାତର କାମ । ପରୀକ୍ଷା ଫଳ ସେମାନଙ୍କ ହାତର କାମ ନୁହେଁ ।

ବଡ଼ ଲୋକମାନେ ବି ଗୀତା କଥା ମନେ ରଖନ୍ତୁ । ସେମାନେ ଭଲ କାମ କରନ୍ତୁ । କିନ୍ତୁ ସେଇ କାମ ନିଜେ କଲେ ବୋଲି କେବେ ବି ଭାବନ୍ତୁ ନାହିଁ । ଭଗବାନଙ୍କ ଇଚ୍ଛାରେ ହିଁ ସବୁ କାମ ହେଉଛି ବୋଲି ବିଶ୍ୱାସ କରନ୍ତୁ । ଫଳ ଉପରେ ଆଶା ରଖନ୍ତୁ ନାହିଁ । ଭଗବାନଙ୍କ ଉପରେ ପୂରା ଭରସା ରଖି ସବୁ କାମ କରି ଯାଆନ୍ତୁ ।

ଗୀତାର କି ସୁନ୍ଦର ଉପଦେଶ ! ସାକ୍ଷାତ୍ ଭଗବାନଙ୍କ ମୁହଁରୁ ହିଁ ଏ କଥା ବାହାରିଛି । ତାହା ମାନି ଚଳ । ତୁମେ ସୁଖୀ ହୁଅ । ସଭିଏଁ ସୁଖୀ ହୁଅନ୍ତୁ ।



## ଅଧ୍ୟାୟ - ୩

# ମୋ' ପାଇଁ ମୁଁ ନାହିଁ

ହରିପୁର ଗାଁ ମୁଣ୍ଡରେ ଚାଟଶାଳୀଟିଏ । ସେଠି ଗୋଟିଏ ଶ୍ରେଣୀରେ ପଢୁଥିବା ଚାରୋଟି ପିଲା ଭାରି ସାଙ୍ଗ ଥିଲେ । କେହି କାହାକୁ ଦିନେ ନ ଦେଖିଲେ ରହିପାରୁ ନ ଥିଲେ । ଦିନ ଗଡ଼ି ଚାଲିଲା । ଚାରି ସାଙ୍ଗ ବଡ଼ ହେଲେ । ତିନି ସାଙ୍ଗ ଗାଁ ଛାଡ଼ି ଯାଇ ଅନ୍ୟଠି ରହିଲେ । କେବଳ ଜଣେ ଚାଷବାସ କରି ସେଇ ଗାଁରେ ରହିଲା ।

ଜଣେ ପାଠ ପଢ଼ି ରାଜନୀତି ଭିତରେ ପଶିଲେ । ଯୋଗକୁ ସେ ମନ୍ତ୍ରୀ ହେଲେ । ହଟଚମଟ କରି ବହୁତ ଧନ କମେଇଲେ । ଆଉ ଜଣେ ବ୍ୟବସାୟୀ ହେଲେ । ସହରରେ ରହି ଚୋରା ବ୍ୟବସାୟ କରି କୋଟି କୋଟି ଟଙ୍କା ଜମେଇଲେ । ତୃତୀୟ ଜଣ ଚାକିରୀ କଲେ । ଲାଞ୍ଚମିଛରେ ବୁଡ଼ି ରହି ସେ ଲକ୍ଷ ଲକ୍ଷ ଟଙ୍କା ଠୁଳ କଲେ ।

ଥରେ ହରିପୁର ଗାଁରେ ଗୋଟିଏ ବଡ଼ ଯଜ୍ଞ ହେଲା । ବାହାରେ ରହୁଥିବା ଆଗର ଗାଁ ଲୋକଙ୍କ ପାଖକୁ ନିମନ୍ତ୍ରଣ ଗଲା । ଯୋଗକୁ ମନ୍ତ୍ରୀ, ବ୍ୟବସାୟୀ ଓ ଚାକିରିଆ ସାଙ୍ଗ ତିନି ଜଣ ହରିପୁର ଆସିଲେ । ଗାଁର ଚାଷୀ ସାଙ୍ଗ ସେମାନଙ୍କ ସହିତ ମିଶିଲା । ଚାରି ସାଙ୍ଗ ବହୁତ ଦିନ ପରେ ଏକାଠି ହୋଇଥାନ୍ତି । ତେଣୁ ଯଜ୍ଞପୀଠର ଟିକେ ଦୂରରେ ବସି କଥାଭାଷା ହେବାକୁ ଲାଗିଲେ ।

ମନ୍ତ୍ରୀ କହିଲେ - ସମସ୍ତେ ଭାବୁଥିବେ, ମୁଁ ମନ୍ତ୍ରୀ ହୋଇ ବହୁତ ସୁଖରେ ଅଛି । ଅବଶ୍ୟ ମୋର କ୍ଷମତା ଅଛି । ପଇସାର ଅଭାବ ନାହିଁ । କିନ୍ତୁ ମୋ ଦୁଃଖ କାହା ଆଗରେ କହିବି ? କହିଲେ, ମୋ ଦୁଃଖ ବୁଝିବ

କିଏ ? ମୋର ଗୋଟିଏ ମାତ୍ର ପୁଅ । ପାଠ ପଢ଼ିବାକୁ ଆମେରିକା ପଠାଇଲି । ସେଠି ସେ ବାହା ହୋଇ ରହିଗଲା । ପୁଅ ଥିବା ନ ଥିବା ମୋ ପାଇଁ ସମାନ ହେଲା ।

ବ୍ୟବସାୟୀ ସାଙ୍ଗ କହିଲେ - ମୁଁ ବହୁତ ଧନ କମେଇଲି । ହେଲେ ମୋ ଦୁଃଖ କଥା କହିଲେ ନ ସରେ । ମୋ ସ୍ତ୍ରୀକୁ କାନ୍‌ସର ରୋଗ । ଏକ ବର୍ଷ ହେଲା ବିଦେଶରେ ରହି ଚିକିତ୍ସା ହେଉଛନ୍ତି । ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଛି । କେତେ ଦିନ ବଞ୍ଚିବେ, ଡାକ୍ତର ତାହା କହି ପାରୁନାହାନ୍ତି ।

ଚାକିରିଆ ସାଙ୍ଗ କହିଲେ - ତୁମ ଦୁହିଁଙ୍କଠାରୁ ବଳି ମୋ ଦୁଃଖ । ମୋର ଦୁଇଟି ପୁଅ । ପାଠ ପଢ଼ିଲେ । କିନ୍ତୁ ଅବାଟରେ ଗୋଡ଼ ଦେଲେ । ଦୁଇ ପୁଅ ମଦୁଆ, ପୁଣି ଗୁଣ୍ଡା । ନାହିଁ ନ ଥିବା ଦୁର୍ନାମ ଘରର । ମୋ ସ୍ତ୍ରୀର ଆଖିରୁ ଲୁହଧାର କେବେ ଶୁଖୁନାହିଁ । ମୁଁ ଦାଣ୍ଡରେ ମୁଣ୍ଡ ଟେକି ଚାଲିପାରୁନାହିଁ । ଧିକ୍ ଆମ ଜୀବନକୁ !

ଚାଷୀ ସାଙ୍ଗ କହିଲା -ଆମେ, ବାବୁ, ଗରିବ ଲୋକ । ଗାଁ ମାଟିକୁ କାମୁଡ଼ି ପଡ଼ି ରହିଛୁ । ପୁଅ ଦୁଇଟି ମୋର ବେଶ୍ କାମିକା । ଖଟି ଖାଉଛୁ । ପାଖରେ ବଳକା ଧନ ନାହିଁ । ମୋ ପୁଅବୋହୂ ଭାରି ଭଲ । ଆମକୁ ମାନି ଚଳୁଛନ୍ତି । ଘରେ କେହି କେବେ ସେମିତି ବେଶୀ ଅସୁସ୍ଥ ହେବା ଆମେ ଜାଣି ନାହୁଁ ।

ଯଜ୍ଞପୀଠର ଗୋଟିଏ ପାଖରେ ଠିଆ ହୋଇ ଜଣେ ସାଧୁ ଚାରି ସାଙ୍ଗଙ୍କ କଥା ଶୁଣୁଥିଲେ । ସେ ସେମାନଙ୍କ ପାଖକୁ ଆସି କହିଲେ - ମୁଁ ସବୁ ଶୁଣିଛି । ଚାରି ଜଣ ସାଙ୍ଗଙ୍କ ସୁଖଦୁଃଖ କଥା ବୁଝାଇ କହୁଛି, ଶୁଣ । ହୁଏତ ତୁମେ ସେଥିରୁ କିଛି ଶିଖିବ ।

ତୁମେ ଚାରି ସାଙ୍ଗ ଭିନ୍ନ ଭିନ୍ନ କର୍ମ କଲ । ତୁମ ଭିତରୁ ତିନି ଜଣ କେବଳ ନିଜ ସ୍ୱାର୍ଥରେ ଲାଖି ରହିଲ । କର୍ମ ନ କରି ଅଳସୁଆ ହେବା ଠିକ୍ ନୁହେଁ । ପୁଣି କେବଳ ନିଜ ପାଇଁ ଓ ନିଜ ପରିବାର ପାଇଁ

କାମ କରିବା ବି ଠିକ୍ ନୁହେଁ । ପରର ଉପକାର କର । ଅନ୍ୟର ସୁଖରେ ସୁଖୀ ହୁଅ । ଅନ୍ୟର ଦୁଃଖରେ ଦୁଃଖୀ ହୁଅ । ଦେଖ, ତୁମ ଚାଷୀ ସାଙ୍ଗ ନିଜ କର୍ତ୍ତବ୍ୟ କରି ଅନ୍ୟମାନଙ୍କୁ ଖାଦ୍ୟ ଯୋଗାଉଛି । ସାହିପଡ଼ିଶା ଲୋକଙ୍କ ସୁଖଦୁଃଖର ସାଥି ହୋଇ ଦିନ ବିତାଉଛି । ତେଣୁ ସେ ସୁଖଶାନ୍ତିରେ ଅଛି ।

ହଁ, ତୁମେ ରାଜନୀତି, ବ୍ୟବସାୟ କିମ୍ବା ଚାକିରୀ କର । ହେଲେ, ନିଜ ବୃତ୍ତିରେ କେବଳ ନିଜ ସୁଖ ସୁବିଧା ଦେଖ ନାହିଁ । 'ମୋ ପାଇଁ ମୁଁ' ବୋଲି ଭାବ ନାହିଁ । ନିଜ ପାଇଁ କାମ କଲେ ତୁମେ ଛୋଟ ହୋଇଯିବ । ତାହା ତୁମକୁ (ତୁମ ଆତ୍ମାକୁ) ତଳକୁ ନେଇଯିବ । ଅନ୍ୟ ପାଇଁ କାମ କର । ତା'ଠାରୁ କିଛି ପାଇବାକୁ ଆଶା ରଖ ନାହିଁ । ତାହାହେଲେ ତୁମେ ବଡ଼ ହୋଇପାରିବ । ତୁମେ (ତୁମ ଆତ୍ମା) ଉପରକୁ ଉଠି ଭଗବାନଙ୍କ ନିକଟରେ ପହଞ୍ଚିଯିବ । ଭଗବାନ ତୁମକୁ ନିଜର କରିନେବେ ।

ଗୋଟିଏ କଥା ବୁଝ । ରାଜନୀତିର ମୂଳ ଲକ୍ଷ୍ୟ ହେଲା ଲୋକସେବା । ବେପାରୀ ଦୂର ଜାଗାରୁ ଜିନିସ ଆଣି ଆମକୁ ଯୋଗାଇ ଦିଏ । ତେଣୁ ବେପାର ଏକ ପ୍ରକାର ସମାଜ ସେବା କାର୍ଯ୍ୟ । ସେହିପରି ଚାକିରୀ ବି ଏକ ପ୍ରକାର ଲୋକସେବା ବୃତ୍ତି । କୌଣସିଟି ମନ୍ଦ କାମ ନୁହେଁ । ସେଥିରେ କେବଳ ନିଜ ସୁଖ ସୁବିଧା ଦେଖିବା ହିଁ ମନ୍ଦ କାମ । ଆମ ଦେଶରେ ଭଲ ନେତା, ସାଧୁ ବ୍ୟବସାୟୀ ଓ ସଚ୍ଚୋଟ ଚାକିରିଆ ଅନେକ ଅଛନ୍ତି । ସେମାନଙ୍କୁ ଆଖି ଆଗରେ ରଖି କାମ କର ।

ସାଧୁ ଯାହା କହିଲେ, ତାହା ହେଲା ଗୀତାର ତୃତୀୟ ଅଧ୍ୟାୟର ସାର କଥା । ପରୋପକାରରେ ମନ ଦିଅ । ଏ ଜୀବନରେ ସୁଖୀ ଓ ଲୋକପ୍ରିୟ ହୁଅ । ଦେହ ଛାଡ଼ିଲେ ଭଗବାନଙ୍କ ପାଖକୁ ଚାଲିଯାଅ ।



## ଅଧ୍ୟାୟ - ୪

# ଜନ୍ମମରଣ କଷ୍ଟରୁ ପାରି ହେବା କେମିତି ?

ହିମାଳୟ ପର୍ବତ ତଳେ ମଠଟିଏ । ଶହ ଶହ ସାଧୁସନ୍ଥ ସେହି ମଠରେ ରହନ୍ତି । ସେମାନଙ୍କ ମଧ୍ୟରୁ ତିନି ଜଣ ସାଧୁଙ୍କ କଥା ଏଠାରେ କହୁଛି ।

ଜଣଙ୍କର ନାଁ ମୋହନ । ଭାରି କାମିକା ସାଧୁ ସେ । ମଠର ତୁଳସୀ କିଆରୀର ଯତ୍ନ ନିଅନ୍ତି । ନିଜ ଲୁଗାପଟା, ଲୋଟା ଚିମୁଟା ଉପରେ ପୂରା ନଜର ରଖୁଥାନ୍ତି । ତାଙ୍କ ଜିନିଷ ଟିକିଏ ଏପାଖ କି ସେପାଖ ହେଲେ ରାଗି ନିଆଁବାଣ ହୋଇଯାନ୍ତି । ଭାରି ମିଠେଇପ୍ରିୟ ମୋହନ ବାବା । ଲଡୁ କି ପେଡ଼ା ଯଦି ପାଇଲେ ଆକଣ୍ଠ ଗିଳିଯିବେ । ସେଥିପାଇଁ ମଠ ଭିତରେ ଓ ବାହାରେ ସେ 'ମିଠେଇ ବାବା' ନାମରେ ପରିଚିତ ଥିଲେ ।

ଆଉ ଜଣେ ସାଧୁ ଥିଲେ ସେବାନନ୍ଦ ବାବା । ଏଇ ନାଁରେ ସେ ସବୁଠି ପରିଚିତ ଥିଲେ । ନାଁ ଯେମିତି, ତାଙ୍କ କାମ ସେମିତି । ସେ ମଠର ସବୁ ସାଧୁସନ୍ଥଙ୍କର କିଛି ନା କିଛି ସେବା କରୁଥିଲେ । କୌଣସି ସାଧୁ ବେମାର ପଡ଼ିଲେ ସେ ରାତିଦିନ ତାଙ୍କ ସେବାରେ ଲାଗି ଯାଉଥାନ୍ତି । ସେ କାହାଠାରୁ ପ୍ରଶଂସା ଶୁଣିବାକୁ ଚାହୁଁ ନ ଥିଲେ । କେହି ତାଙ୍କର ପ୍ରଶଂସା କଲେ ସେ ଜମା ଖୁସି ହେଉ ନ ଥିଲେ । ସବୁବେଳେ ଭଗବାନଙ୍କଠାରେ ମନ ରଖୁଥାନ୍ତି ।

ତୃତୀୟ ସାଧୁଙ୍କ ନାଁ ଜ୍ଞାନାନନ୍ଦ । ଭାରି ଜ୍ଞାନୀ ବାବା ଜଣେ । ବେଶୀ ସମୟ ଆଖି ବୁଜି ଧ୍ୟାନରେ ବସି ରହନ୍ତି । ଖାଇବା ପିନ୍ଧିବା

କଥାରେ ତାଙ୍କର ମନ ନ ଥାଏ । ଯାହା ମିଳିଲା, ସେଥିରେ ସନ୍ତୁଷ୍ଟ । ନ ପାଇଲେ ବି ଦୁଃଖ ନାହିଁ । ମଠରେ ଥାଇ ବି ନ ଥିଲା ପରି ଥାଆନ୍ତି । ସେ ଭଲଭାବେ ବୁଝିଥିଲେ, ଏ ଦେହ ଆଜି ଅଛି, କାଲି ନ ଥିବ । ତେଣୁ ଆତ୍ମାକୁ ପରମାତ୍ମାଙ୍କ ସହିତ ଲଗାଇବାକୁ ପଡ଼ିବ, ମାନେ ଯୋଗ କରିବାକୁ ପଡ଼ିବ ।

ମଠର ମହନ୍ତ ମହାରାଜ ମୋହନ ବାବାଙ୍କୁ ଭଲ ପାଉ ନ ଥିଲେ । ଅନ୍ୟ ସାଧୁଙ୍କ ପାଖରେ ବସି ଏଣୁତେଣୁ ଗପୁଥିବାରୁ ସେ ବେଳେବେଳେ ତାଙ୍କ ଉପରେ ବିଗିଡୁଥିଲେ । କିନ୍ତୁ ସେବାନନ୍ଦ ବାବାଙ୍କୁ ସେ ଭାରି ଭଲ ପାଉଥିଲେ । କହୁଥିଲେ, "ସାଧୁ ହେବ ତ ଏମିତି । କିରେ, କାମ କଲି ବୋଲି ଢୋଲ ପିଟିବ କାହିଁକି ? ଏମିତିକା କାମର ମୂଲ୍ୟ କିଛି ରହେ ନାହିଁ ।" ଆଉ, ମହନ୍ତ ମହାରାଜ ନିଜେ ମଠର ମାଲିକ ହୋଇ ବି ଜ୍ଞାନାନନ୍ଦବାବାଙ୍କୁ ଭାରି ସମ୍ମାନ ଦେଖାଉଥିଲେ ।

ଦିନ ପରେ ଦିନ ଗଡ଼ି ଚାଲିଲା । ଏଇ ତିନି ସାଧୁ ବୁଢ଼ା ହୋଇ ଜଣକ ପରେ ଜଣେ ଦେହ ଛାଡ଼ିଲେ । ମଲା ପରେ ମିଠେଇ ବାବା ଗୋଟିଏ ମିଠେଇ ଦୋକାନୀ ଘରେ ପୁଅ ହୋଇ ଜନ୍ମ ହେଲେ । କିନ୍ତୁ ସେବାନନ୍ଦ ବାବା ଓ ଜ୍ଞାନାନନ୍ଦ ବାବା ମରିବା ପରେ ଆଉ ଜନ୍ମ ନେଲେ ନାହିଁ । ସେମାନେ ମୋକ୍ଷ ପାଇଗଲେ । ଭଗବାନଙ୍କ ସହ ଏକ ହୋଇଗଲେ । କି ଭାଗ୍ୟ ସେମାନଙ୍କର ସତରେ !

ଗୀତାର ଚତୁର୍ଥ ଅଧ୍ୟାୟର ସାରକଥା ଏଇ କାହାଣୀର ସାରକଥା ପରି । ମନୁଷ୍ୟ ଥରକୁ ଥର ଏ ସଂସାରରେ ଜନ୍ମ ନିଏ, ପୁଣି ମରେ । ଜୀବନରେ ନାନା ଦୁଃଖ, କଷ୍ଟ, ଅଶାନ୍ତି ଭୋଗ କରେ । ତେଣୁ ଆମେ ଏମିତି କାମ କରିବା, ଯାହା ଯୋଗୁଁ ଏ ସଂସାରରେ ଆଉ ଜନ୍ମ ନେବା ନାହିଁ । ସବୁ କାଳପାଇଁ ଜନ୍ମମରଣ କଷ୍ଟରୁ ପାରି ହୋଇଯିବା । କର୍ମବନ୍ଧନରୁ ମୁକୁଳିଯିବା । ଏଥିପାଇଁ ଦୁଇଟି ଉପାୟ ଅଛି ।

ଗୋଟିଏ ହେଲା, ପର ପାଇଁ ଭଲ କାମ କର । ହେଲେ ମୁଁ ତାହା କରିଛି ବୋଲି ଭାବ ନାହିଁ । ଏଇ ମୁଁକାର ଭାବ ଆମର ସବୁ ବିଗାଡ଼ିଦେବ । ଗୋଟାଏ କଥା ବୁଝ । କାମ ହେଲା ଯଜ୍ଞ । ଯଜ୍ଞ କଲେ ତା' ଫଳ ମିଳେ । ସେହିପରି କାମର ନିଶ୍ଚୟ ଗୋଟାଏ ଫଳ ମିଳିବ । କାମ କର, କିନ୍ତୁ ତା' ଫଳରେ ଆଶା ରଖ ନାହିଁ । ଯଦି ଆଶା ରଖିଲ, ତେବେ ତୁମେ ପୁଣି ଜନ୍ମ ହେବ । ସବୁଠାରୁ ଭଲ ହେବ ଏମିତି କଲେ : ସମସ୍ତଙ୍କ ମଙ୍ଗଳ ପାଇଁ ତୁମ କାମର ଫଳକୁ ପରମାତ୍ମାଙ୍କୁ ଦେଇଦିଅ । ତାହା କଲେ ପରମାତ୍ମାଙ୍କ ପାଖକୁ ଯିବା ପାଇଁ ତୁମ ବାଟ ଫିଟିଯିବ । ତାଙ୍କ ଜାଗା ହେଲା ତୁମ ମୂଳ ଘର । ସେଠି ପହଞ୍ଚିଗଲା ପରେ ଏ ସଂସାରକୁ ଆଉ ପଚାରେ କିଏ ?

ଦ୍ୱିତୀୟ କଥା ହେଲା, ଆତ୍ମା ଓ ପରମାତ୍ମା କଥା ଠିକ୍‌ଭାବେ ବୁଝିବା । ଆମ ଆତ୍ମାର ପରମାତ୍ମାଙ୍କ ସହିତ ସମ୍ବନ୍ଧ ଅଛି । ଆମ ଦେହ, ଏପରିକି ଏ ସଂସାର ବି ଦିନେ ନଷ୍ଟ ହେବ । ସଂସାର ଗଢ଼ିବା ଓ ଭାଙ୍ଗିବା ପରମାତ୍ମାଙ୍କ ଇଚ୍ଛାରେ ହୁଏ । ତେଣୁ ସଂସାର କଥା ନ ଭାବି ଭଗବାନଙ୍କ ସହିତ ନିଜକୁ ଯୋଗ କରିଦିଅ । ତାହାହେଲେ ତୁମେ ଜନ୍ମମରଣ କଷ୍ଟରୁ ପାରି ହୋଇଯିବ ।

ଏଠାରେ ଆଉ ଗୋଟିଏ କଥା ସବୁବେଳେ ମନେ ରଖିବା । ଆମେ ନିଜକୁ ବଞ୍ଚାଇବା ପାଇଁ ଓ ପରିବାର ଚଳାଇବା ପାଇଁ କାମ କରିବା । କିନ୍ତୁ ଆମ କାମର ଫଳରେ ସୁଖୀ କି ଦୁଃଖୀ ହେବା ନାହିଁ । ଭଗବାନଙ୍କଠାରେ ମନ ରଖିଥିବା । ଜୋତା ତିଆରି କରିବା ହେଲା ମୋଚିର କୌଳିକ ବୃତ୍ତି । ଏ କାମ ସେ କରୁ କିନ୍ତୁ ତା' ମନ ଭଗବାନଙ୍କଠାରେ ଥାଉ । ତାହାହେଲେ ସେ ବି ତାଙ୍କର ପ୍ରିୟ ହୋଇପାରିବ । ମୂଳ କଥା ହେଲା, କାମ ଭିତରେ ବୁଡ଼ିଯାଅ ନାହିଁ । କାମ କଲାବେଳେ ଭଗବାନଙ୍କୁ ଭୁଲିଯାଅ ନାହିଁ । ତାହାହେଲେ ତୁମେ ସହଜରେ ତାଙ୍କୁ ପାଇପାରିବ ।

★★★

## ଅଧ୍ୟାୟ - ୫

# ସୁଖଦୁଃଖ ଉପରକୁ ଉଠିଯାଅ

ଜାତକର କାହାଣୀଟିଏ : ରାସ୍ତାରେ ଚାଲିଛି ମାଇପିଟିଏ । କାନ୍ଧରେ ତା'ର ଲୋଟି ପଡ଼ିଛି କଅଁଳିଆ ଛୋଟ ପିଲାଟିଏ । ଆଖିରୁ ତା'ର ବହିଚାଲିଛି ଧାର ଧାର ଲୁହ । ମାଇପିଟି ଦୁଆର ଦୁଆର ବୁଲି ଡାକ ଛାଡୁଛି, 'ସୋରିଷ ମୁଠାଏ ଦିଅ, ମା' ।

ଏଇ ପୁଅଟି ଥିଲା ସ୍ତ୍ରୀ ଲୋକଟିର ସବୁ କିଛି । ରୋଗରେ ପଡ଼ି ପିଲାଟି ମରିଗଲା । ମା'ର ସଂସାର ସରିଗଲା । ମଥା କଚାଡ଼ି କାନ୍ଦିବାକୁ ଲାଗିଲା ସେ । କେତେ ଲୋକ ତାକୁ ଆଶ୍ୱାସନା ଦେଇ କହିଲେ - ଅନ୍ତ ଦୂରରେ ଭଗବାନ ବୁଦ୍ଧ ଅଛନ୍ତି । ତାଙ୍କ ପାଖକୁ ଯା' । ତାଙ୍କୁ ପ୍ରାର୍ଥନା କର । ସେ ଚାହିଁଲେ ତୋ' ପୁଅକୁ ବଞ୍ଚାଇଦେବେ ।

ମାଇପିଟି ବୁଦ୍ଧଦେବଙ୍କ ପାଖକୁ ଗଲା । ମଥା ପିଟି କାନ୍ଦି କାନ୍ଦି କହିଲା- ପ୍ରଭୁ, ମୋର ଏ ମଲା ପୁଅକୁ ଦୟା କରି ବଞ୍ଚାଇଦିଅ ।

ବୁଦ୍ଧଦେବ କହିଲେ - ଠିକ୍ ଅଛି, ବଞ୍ଚାଇଦେବି । ତେବେ ଗୋଟାଏ କାମ କର । କୌଣସି ଘରୁ ମୁଠାଏ ସୋରିଷ ମାଗି ଆଣିବ । ହେଲେ ସେ ଘର ଲୋକଙ୍କୁ ଗୋଟିଏ କଥା ପଚାରି ବୁଝିବ । ତାପରେ ଆଣିବ । ସେ ଘରେ କେବେ କେହି ମରି ନ ଥିବେ ଯେମିତି ।

ମାଇପିଟି କେତେ ଦୁଆରେ ହାତ ପତେଇଲା । ସଭିଏଁ ସୋରିଷ ମୁଠାଏ ଦେବାକୁ ରାଜି । ହେଲେ କେଉଁ ଘରେ ଅବା ମଣିଷ ମରିନାହାନ୍ତି ? ସେ ବୁଲି ବୁଲି ଥକି ପଡ଼ିଲା । ସୋରିଷ ଆଣିବା ବୃଥା ହେଲା । ଶେଷରେ

ସେ ବୁଦ୍ଧଦେବଙ୍କ ପାଖକୁ ଯାଇ କହିଲା - ପ୍ରଭୁ, ସୋରିଷ ପାଇଲି ନାହିଁ । ବୁଝି ଆସିଲି, ସବୁ ଘରେ ମଣିଷ ମରିଛନ୍ତି । ମୁଁ କଣ କରିବି ?

ବୁଦ୍ଧଦେବ କହିଲେ - ମା', ତୁମେ ଏଥିରୁ କଣ ବୁଝିଲ ? ମଣିଷ ଜନ୍ମ ହେଲେ ନିଶ୍ଚୟ ମରିବ । କିଏ କେବେ ମରିବ, ତାହା କାହାରି ହାତର କଥା ନୁହେଁ । ଏ ସଂସାରରେ ଜନ୍ମମରଣ ଲାଗି ରହିଛି । ଏଥିପାଇଁ ଦୁଃଖ କରୁଛ କାହିଁକି ? ଆଶା ଲାଗି ହିଁ ଦୁଃଖ । ଆଶା କର ନାହିଁ, ଦୁଃଖ ପାଇବ ନାହିଁ । ସୁଖ ଓ ଦୁଃଖର ଜନ୍ମସ୍ଥାନ ହେଲା ମନ । ସୁଖଦୁଃଖ ଭିତରେ ବୁଡ଼ି ରହ ନାହିଁ । ତା' ଉପରକୁ ଉଠିଯାଅ ।

ମାଇପିଟି ଠିକ୍ କଥା ବୁଝିଗଲା । ତା'ର ଦୁଃଖ ଚାଲିଗଲା ।

ଗୀତାର ପଞ୍ଚମ ଅଧ୍ୟାୟର ସାରକଥା ଠିକ୍ ଏ ପ୍ରକାର । କାମର ଫଳକୁ ନିଜେ ନେବାକୁ ଚାହିଁଲେ ଆମେ ସୁଖଦୁଃଖ ଭୋଗିବା । ଫଳ ଆଶା କର ନାହିଁ । ତାହା ଭଗବାନଙ୍କ ଉପରେ ଛାଡ଼ିଦିଅ । ଆଶା ନାହିଁ ତ ଦୁଃଖ ନାହିଁ । ବାଉଁଶ ଥିଲେ ତ ବଇଁଶୀ ବାଜିବ ? ଏମିତି ହେଲେ ତୁମେ ଉପରକୁ ଉଠିପାରିବ । ଭଗବାନଙ୍କ ପାଖରେ ପହଞ୍ଚିପାରିବ । ଚିର ଆନନ୍ଦ ଓ ଶାନ୍ତି ପାଇପାରିବ । ଏହା ବୁଝ । ସୁଖଦୁଃଖରେ ସମାନ ରହି ପ୍ରଭୁଙ୍କଠାରେ ମନ ଲଗାଅ ।

ପ୍ରକୃତ ସନ୍ନ୍ୟାସୀ କିଏ, ତାହା ଏଠି ବିଚାର କରିବା । ପରିବାର, ଧନସମ୍ପତ୍ତି ଆଦି ଛାଡ଼ି ତୀର୍ଥ ସ୍ଥାନରେ ରହିଲେ ମନୁଷ୍ୟ ସନ୍ନ୍ୟାସୀ ହୋଇଯିବ ନାହିଁ । ସୁଖରେ ସୁଖୀ ନ ହୋଇ ଓ ଦୁଃଖରେ ଦୁଃଖୀ ନ ହୋଇ ଯିଏ ଭଗବାନଙ୍କଠି ମନ ଲଗାଇ କାମ କରେ, ସେ ହିଁ ପ୍ରକୃତ ସନ୍ନ୍ୟାସୀ । ଆମେ ଘରେ ଠିକ୍ ଆଚରଣ କଲେ ସନ୍ନ୍ୟାସୀ ହୋଇ ପାରିବା । ଆଉ ଜଣେ ତୀର୍ଥ ସ୍ଥାନରେ ରହି ସୁଖଦୁଃଖରେ ମନ ଦେଲେ ସନ୍ନ୍ୟାସୀ ହୋଇ ପାରିବ ନାହିଁ । ଏ କଥା ବୁଝି ତା' ଅନୁସାରେ କାମ କରିବା ଉଚିତ ।



## ଅଧ୍ୟାୟ - ୬

# ସବୁଠି ସମାନ ଭାବ ରଖ

ଇତିହାସର କଥାଟିଏ : ଦିନକର ଘଟଣା । ମୋଗଲ ଓ ମରାଠୀ ସେନାଙ୍କ ଭିତରେ ଘମାଘୋଟ ଲଢ଼େଇ ଚାଲିଥାଏ । ମୋଗଲ ସେନାପତି ବାହାଲୋଲ ଓ ମରାଠୀ ସେନାପତି ଭାମେଲକରଙ୍କ ଭିତରେ ଲାଗିଥାଏ ଖଣ୍ଡାଯୁଦ୍ଧ ।

ସେ ଦିନ ଶିବାଜୀ ଯୁଦ୍ଧକୁ ଯାଇ ନ ଥିଲେ । ତମ୍ବୁ ଭିତରେ ବସିଥାନ୍ତି । ମନରେ ତାଙ୍କରି ଅସରନ୍ତ ଚିନ୍ତା : ଭାମେଲକର ଏଯାଏଁ ଆସିଲେ ନାହିଁ କାହିଁକି ? ଆମ ସେନା ହାରିଗଲେ, ନା କ'ଣ ?

ଏତିକିବେଳେ ଭାମେଲକର ସେଠାରେ ପହଞ୍ଚିଗଲେ । ଶିବାଜୀଙ୍କୁ ପ୍ରଣାମ କରି କହିଲେ - ମହାରାଜ, ଆଜିର ଖବର ଭଲ । ଆମେ ଜିତିଛୁ । ମୋଗଲ ସେନା ହାରିଯାଇ ପ୍ରାଣଭୟରେ ଯୁଦ୍ଧକ୍ଷେତ୍ରରୁ ପଳାଇଗଲେ । ହଁ, ମୁଁ ଆଜି ହଜୁରୁଙ୍କୁ ଦୁଇଟି ଉପହାର ଭେଟି ଦେବି । ଯୁଦ୍ଧକ୍ଷେତ୍ରରୁ ନେଇ ଆସିଛି । ନିଅନ୍ତୁ ଏଇଟି । ଏ ହେଲା ମୁସଲମାନ ଧର୍ମଗ୍ରନ୍ଥ କୋରାନ୍ । ଆପଣଙ୍କ ହାତରେ ଏହାକୁ ଚିରିଫାଡ଼ି ପୋପାଡ଼ି ଦିଅନ୍ତୁ । ଆଉ, ଏଇ ସବାରୀ ଭିତରେ ଅଛି ମୋଗଲ ସେନାପତି ବାହାଲୋଲର ସ୍ତ୍ରୀ । ମୋର ଦ୍ୱିତୀୟ ଉପହାର ସେ । ତାକୁ ଚାକରାଣୀ କରି ପାଦ ତଳେ ଖଟାନ୍ତୁ । ଯେସାକୁ ତେସା ନ କଲେ ମୋଗଲମାନଙ୍କ ମୁହଁ ବଢ଼ିଯାଉଛି ।

ବାହାଲୋଲଙ୍କ ସ୍ତ୍ରୀ ସବାରୀରୁ ବାହାରି ଆସି ଶିବାଜୀଙ୍କ ଆଗରେ ମୁଣ୍ଡ ନୁଆଇଁ ଠିଆ ହେଲେ । ଭାରି ସୁନ୍ଦର ରୂପ । ତାଙ୍କୁ ଦେଖି

ଶିବାଜୀ କହିଲେ - ମା', ମୁଁ ତୁମ ଗର୍ଭରୁ ଜନ୍ମ ନେଇଥିଲେ କେତେ ସୁନ୍ଦର ଚେହେରା ପାଇଥାନ୍ତି । ତା'ପରେ ଶିବାଜୀ ଭାମେଲକରଙ୍କୁ କହିଲେ - ତୁମେ ଭୁଲ ବୁଝିଛ । ସବୁ ପର ସ୍ତ୍ରୀ ଆମ ମା' ଭଳି । ସବୁ ଧର୍ମଗ୍ରନ୍ଥ ପବିତ୍ର । ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା ଉଚିତ ।

ଶିବାଜୀଙ୍କ ଏଇ କଥାରେ ଗୀତାର ଷଷ୍ଠ ଅଧ୍ୟାୟର ସାରକଥା ଅଛି । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍, ବୌଦ୍ଧ, ଜୈନ ଏବଂ ଶିଖ, ଏସବୁ ମଣିଷ ଜାତିର ଧର୍ମର ଏକ ଏକ ମତ । କିନ୍ତୁ ଧର୍ମ ଏକ । ନିଆଁର ଧର୍ମ ହେଲା ଶିଖା ଟେକି ଉପରକୁ ଉଠିବା, ତା' ଜନ୍ମସ୍ଥାନ ସୂର୍ଯ୍ୟଙ୍କ ସହ ମିଶିଯିବା । ପାଣିର ଧର୍ମ ତଳକୁ ବହିଯିବା, ଆଉ ତା' ଜନ୍ମସ୍ଥାନ ସମୁଦ୍ର ସହ ମିଶିଯିବା । ସେହିପରି ଆମ ଆତ୍ମା ପରମାତ୍ମାଙ୍କଠାରୁ ଆସିଥିବାରୁ ତାର ଧର୍ମ ହେଲା ପରମାତ୍ମାଙ୍କ ସହ ମିଶିଯିବା । ଏଥିପାଇଁ ଆମେ ଚେଷ୍ଟା କରିବା ଉଚିତ ।

ପର ଆପଣା, ଛୋଟବଡ଼, ଧନୀ ଗରିବ, ପାଠୁଆ ଅପାଠୁଆ, ସବୁ ଲୋକଙ୍କୁ ସମାନ ଦୃଷ୍ଟିରେ ଦେଖ । ସୁଖଦୁଃଖ, ନିନ୍ଦାପ୍ରଶଂସା, ହାନିଲାଭ, ସବୁ ପରିସ୍ଥିତିରେ ସମାନ ଭାବ ରଖ । ସମଭାବ ଥିବା ଲୋକର ସ୍ଥାନ ଯୋଗୀଋଷୀଙ୍କଠାରୁ ବି ଉଚ୍ଚରେ । ମନକୁ ସଂଯତ କର । ଆତ୍ମାକୁ ପରମାତ୍ମାଙ୍କ ଆଡ଼େ ନେବାକୁ ଚେଷ୍ଟା କର । ଭଗବାନଙ୍କୁ ଧ୍ୟାନ କର । ତାହାହେଲେ ତୁମେ ସହଜରେ ଭଗବାନଙ୍କ ପାଖରେ ପହଞ୍ଚିପାରିବ ।

ଆମ ସମାଜରେ ସବୁ ପ୍ରକାର ଲୋକ ଅଛନ୍ତି । ଯାହାର ବୁଦ୍ଧି ଓ କାମକୁ ନେଇ ସେ ଚଳୁଛି । ଆମେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା । ଧନୀ ଲୋକ ବୋଲି ତାର ସମ୍ମାନ କି ଆଦର କରିବା ନାହିଁ । ନିଜ ସ୍ୱାର୍ଥ ଲାଗି ତା' ପ୍ରଶଂସା ଗାଇ ବୁଲିବା ନାହିଁ । ଉଚ୍ଚ ଜାତିର ସମ୍ମାନ କି ନୀଚ ଜାତିକୁ ଘୃଣା କରିବା ନାହିଁ । ସୁଖଦୁଃଖ, ନିନ୍ଦାପ୍ରଶଂସା, ହାନିଲାଭ କଥା ଚିନ୍ତା କଲେ ଆମେ କଦାପି ଭଗବାନଙ୍କୁ ଧ୍ୟାନ କରିପାରିବା ନାହିଁ ।

★★★

## ଅଧ୍ୟାୟ - ୬

# ସବୁ କିଛି କେବଳ ଭଗବାନ

ପୁରାଣର କଥାଟିଏ : ଅସୁର ରାଜା ହିରଣ୍ୟକଶ୍ୟପଙ୍କ ଗୋଟିଏ ବୋଲି ପୁଅ । ନାଁ ପ୍ରହ୍ଲାଦ । ପିଲାଟିବେଳୁ ହରିଙ୍କ ନାଁ ନେଉଥାଏ । ପାଟିରେ ହରି ନାଁ ନ ଧରିବା ପାଇଁ ହିରଣ୍ୟ ପୁଅକୁ କେତେ ବୁଝାଇଲେ । କିନ୍ତୁ ପ୍ରହ୍ଲାଦ ହରିନାମ ଛାଡ଼ିଲେ ନାହିଁ । ଏଥିରେ ହିରଣ୍ୟ ବହୁତ ରାଗିଗଲେ । ଭାବିଲେ, ଏମିତି ପୁଅ ଥିବା ଯାହା, ନ ଥିବା ତାହା ।

ହିରଣ୍ୟ ଅସୁର । ତା'ର ସ୍ୱଭାବ ବହୁତ ନିଷ୍ଠୁର । ଠିକ୍ କଲା, ପୁଅ ପ୍ରହ୍ଲାଦକୁ ଜୀବନରେ ମାରିଦେବ । ତାକୁ ଖଣ୍ଡାରେ ହାଣି ମାରିବା ପାଇଁ ପଠାଇଲା । କିନ୍ତୁ ମାରିବାକୁ ଗଲାବେଳେ ଘାତକର ହାତରୁ ଖଣ୍ଡା ଖସିଗଲା । ଦଳି ହୋଇ ମରିବା ପାଇଁ ତାକୁ ହାତୀ ଆଗରେ ପକାଇ ଦିଆଗଲା । କିନ୍ତୁ ହାତୀ ପ୍ରହ୍ଲାଦକୁ ଆନନ୍ଦରେ ଟେକି ନେଇ ପିଠିରେ ବସାଇଲା । ବିଷଧର ସାପମାନଙ୍କ ଭିତରେ ପ୍ରହ୍ଲାଦକୁ ଛାଡ଼ି ଦିଆଗଲା । ହେଲେ ସାପମାନେ ଖୁସିରେ ଏଇ ବାଳକ ସହିତ ଖେଳିଲେ । ହିରଣ୍ୟ ପୁଅକୁ ମାରିବା ପାଇଁ ଯେତେ ଷଡ଼ଯନ୍ତ୍ର କଲା, ସବୁ ଫସର ଫାଟିଗଲା । ହରିଙ୍କ ନାମ ନେଇ ପ୍ରହ୍ଲାଦ ସବୁ ବିପଦରୁ ପାରି ହୋଇଗଲା ।

ଏଥିରେ ହିରଣ୍ୟର ରାଗ ଆହୁରି ବଢ଼ିଗଲା । ଦିନେ ସେ ଆଖି ଲାଲ କରି ପୁଅକୁ ପଚାରିଲା - ମୂର୍ଖ ବାଳକ, ତୋ' ହରି କେଉଁଠି ଅଛି, ମୋତେ ଦେଖାଇପାରିବୁ ?

ପ୍ରହ୍ଲାଦ ହାତ ଯୋଡ଼ି କହିଲା - ହରି ସବୁଠି ଅଛନ୍ତି ।

ଦାନ୍ତ କଡ଼ମଡ଼ କରି ହିରଣ୍ୟ ପଚାରିଲା - ଏ ଖମ୍ବ ଭିତରେ ତୋ' ହରି ଅଛି ?

ପ୍ରହ୍ଲାଦ କହିଲା - ଅଛନ୍ତି, ବାପା ।

ହିରଣ୍ୟ ତା' ଦେହର ସବୁ ବଳ ଖଟାଇ ଲାତେ ମାରିଲା ସେଇ ଖମ୍ବକୁ । ଖମ୍ବ ଭାଙ୍ଗି ତଳେ ପଡ଼ିଗଲା । କି ଅଦ୍ଭୁତ କଥା ! ତା' ଭିତରୁ ବାହାରି ପଡ଼ିଲେ ପ୍ରଭୁ ନରହରି । ମଣିଷର ଦେହ ଓ ସିଂହର ମୁଣ୍ଡ । ହିରଣ୍ୟ ବର ପାଇଥିଲା, କୌଣସି ପ୍ରାଣୀଦ୍ୱାରା, ଅସ୍ତ୍ରଶସ୍ତ୍ରରେ, ଦିନରେ ବା ରାତିରେ, ଜଳ, ସ୍ଥଳ ବା ଆକାଶରେ ତାର ମୃତ୍ୟୁ ହେବ ନାହିଁ । ଦେବକୃତ ହେଲା । ପ୍ରଭୁ ନରହରି ସନ୍ଧ୍ୟାବେଳେ ହିରଣ୍ୟକୁ ନିଜ ଜଘ ଉପରକୁ ଟେକି ନେଇ ତାଙ୍କ ନଖରେ ତା' ପେଟକୁ ଚିରି ମାରିଦେଲେ ।

ଏହି ପୁରାଣ କଥାର ସାର ଗୀତାର ସପ୍ତମ ଅଧ୍ୟାୟର ସାରକଥା ପରି । ମନୁଷ୍ୟ ବୁଝିବା ଉଚିତ ଯେ, ଭଗବାନ ସବୁଠି, ସବୁ ରୂପରେ, ସବୁବେଳେ ଅଛନ୍ତି । ପିମ୍ପୁଡ଼ିଠାରୁ ହାତୀ ଯାଏଁ ସବୁ ଜୀବ, ବାଲି କଣିକାଠାରୁ ପର୍ବତଯାଏଁ, ପାଣିଟୋପାରୁ ମହାସାଗର ପର୍ଯ୍ୟନ୍ତ, ଗ୍ରହନକ୍ଷତ୍ର, ସବୁ ଦେବଦେବୀ, ସବୁଠି ଭଗବାନଙ୍କ ସତ୍ତା ଅଛି । ଏପରିକି ସୃଷ୍ଟି ହୋଇ ନ ଥିବା ଜିନିଷ ଭିତରେ ବି ସେ ଅଛନ୍ତି । ସେ ସବୁ ଜାଣନ୍ତି, ସବୁ ଦେଖନ୍ତି, ସବୁ ଶୁଣନ୍ତି ଏବଂ ସବୁ କରନ୍ତି । ସବୁ କିଛି ଭଗବାନ । ଏ ପ୍ରକାର ଭାବ ଥିଲେ ଆମେ କେବେହେଲେ ଅଭାବରେ ପଡ଼ିବା ନାହିଁ ।

ତେଣୁ ତାଙ୍କୁ ଭରସା କରି, ତାଙ୍କ ମହିମା ଗାଇ ଦିନ ବିତାଅ ।



## ଅଧ୍ୟାୟ - ୮ :

# ମରିବା ବେଳେ ଭଗବାନଙ୍କଠି ମନ ଦିଅ

ଭାଗବତର କଥାଟିଏ : ରାଜା ଭରତଙ୍କ ନାଁ ଅନୁସାରେ ଏ ଦେଶର ନାଁ ହେଲା ଭାରତ । ଭରତ ବୁଢ଼ା ହେଲେ । ସେଠୁ ସେ ତାଙ୍କ ପୁଅ ହାତରେ ରାଜ୍ୟଭାର ଦେଇ ବଣକୁ ଚାଲିଗଲେ । ବଣରେ ରହି ଘୋର ତପସ୍ୟା କଲେ । ତପସ୍ୟା ଯୋଗୁଁ ସେ ଋଷି ହୋଇଗଲେ ।

ଦିନକର ଘଟଣା । ଋଷି ଭରତ ନଈରେ ଗାଧୋଉଥାନ୍ତି । ଏତିକିବେଳେ ନଈକୂଳରେ ହରିଣ ଛୁଆଟିଏ ଦେଖିଲେ । ତାକୁ ଜନ୍ମ କରି ତା' ମା' ତାକୁ ସେଠି ଛାଡ଼ି ଚାଲିଯାଇଛି । ଅସାହା ଛୁଆ ପ୍ରତି ଭରତଙ୍କର ଦୟା ହେଲା । ସେ ତାକୁ ଆଶ୍ରମକୁ ନେଇଗଲେ । ସେଠି ତାକୁ ନିଜ ପୁଅ ପରି ସ୍ନେହ ଯତ୍ନରେ ପାଳିଲେ । ତାକୁ କଅଁଳ ଘାସ ଖାଇବାକୁ ଦେଉଥାନ୍ତି । ଆଦରରେ ତା' ଦେହକୁ ଆଉଁସି ଦେଉଥାନ୍ତି । ରାତିରେ ତାକୁ ନିଜ ପାଖରେ ଶୁଆଉଥାନ୍ତି ।

ହରିଣ ପ୍ରତି ଭରତଙ୍କ ସ୍ନେହ ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେ ଜପତପ ସବୁ ଛାଡ଼ି ଏଣିକି କେବଳ ହରିଣ ବିଷୟରେ ମନ ଦେଲେ । ଏମିତି କି ମଲାବେଳକୁ ବି ସେ ତାଙ୍କ ହରିଣ କଥା ଭାବୁଥାନ୍ତି ।

ଋଷି ଭରତ ମରିଗଲେ । ମଲା ପରେ ପୁଣି ଜନ୍ମ ନେଲେ । କେଉଁ ଜାତିରେ ଜନ୍ମ ନେଲେ, ଜାଣ ? ପଶୁ ଜାତିରେ, ହରିଣଛୁଆ ହୋଇ । ଏତେ ବଡ଼ ଋଷି ହରିଣଛୁଆ ହେଲେ କାହିଁକି ? ତାଙ୍କ ତପସ୍ୟାର ଫଳ ଗଲା କୁଆଡ଼େ ?

ଏହାର ଉତ୍ତର ଦେଇଛନ୍ତି ନିଜେ ଭଗବାନ ଶ୍ରୀକୃଷ୍ଣ ଗୀତାର ଅଷ୍ଟମ ଅଧ୍ୟାୟରେ । ତାହା ଏ ପ୍ରକାର :

ଭରତ ଋଷିଙ୍କ କଥାର ସାର ଯାହା, ଗୀତାର ଅଷ୍ଟମ ଅଧ୍ୟାୟର ସାରକଥା ତାହା । ଆମେ ଜୀବନସାରା ଯେଉଁ ବିଷୟରେ ବେଶୀ ମନ ଦେଇଥିବା, ମଲାବେଳକୁ ଆମ ମନକୁ ସେହି କଥା ହିଁ ଆସିବ । ଆଉ, ତା' ଅନୁସାରେ ଆମକୁ ପରଜନ୍ମରେ ଦେହ ମିଳିବ । କଳରା ମଞ୍ଜି ପୋତି କାକୁଡ଼ି ଫଳିବା ଆଶା କରିବା ବୃଥା ।

ଏ ସଂସାରର କୌଣସି ଜିନିଷ ଆମର ନୁହେଁ । କୌଣସି ଗୋଟାକୁ ଜନ୍ମବେଳେ ଧରି ଆସି ନ ଥିଲେ । ପୁଣି କୌଣସି ଗୋଟାକୁ ମଲାବେଳେ ସାଙ୍ଗରେ ନେଇ ଯିବା ନାହିଁ । ଏହା ସମସ୍ତେ ଆଖିରେ ଦେଖୁଛନ୍ତି । ତେଣୁ ସଂସାରର ଜିନିଷରେ ଲୋଭେଇ ନ ଯାଇ ତାକୁ ସୃଷ୍ଟି କରିଥିବା ପରମାତ୍ମାଙ୍କଠାରେ ମନ ଦେବା ଉଚିତ । ସେ ହିଁ ସଂସାରର ସାର ବୋଲି ଭାବିବା ଉଚିତ । ତାହାହେଲେ ମରଣବେଳେ ସେ ନିଶ୍ଚୟ ମନେ ପଡ଼ିବେ । ଏଥିପାଇଁ ହିଁ ନିତି ପୂଜାପାଠ କରାଯାଏ ।

ହଁ, ଏଥିପାଇଁ ଅଭ୍ୟାସ ଆବଶ୍ୟକ । ଆମେ ବସିବାବେଳେ, ଚାଲିବାବେଳେ, ଶୋଇବାକୁ ଯିବାବେଳେ, ନିଦରୁ ଉଠିବା ସମୟରେ ଭଗବାନଙ୍କ ନାମ ନେବା । ସେତେବେଳେ ତାଙ୍କଠି ଆମ ମନ ଥିବ ଯେମିତି । ଏମିତି କଲେ ମଲାବେଳେ ସେ ଛାଏଁ ଆମର ମନେ ପଡ଼ିବେ ।

କେତେକ ଲୋକ ଭଗବାନଙ୍କ ନାଁ ନିଅନ୍ତି, ମାଳା ଗଡ଼ାନ୍ତି, ପୂଜାପାଠ କରନ୍ତି ଏବଂ ଅନ୍ୟ ଆଗରେ ନାନା ଶାସ୍ତ୍ର କଥା ବଖାଣନ୍ତି । ଏଣେ ନିଜେ ନାନା ଅନୀତି, ଅଧର୍ମ କାମ କରନ୍ତି । ମନେ ରଖ, ନ ଜାଣି ଭୁଲ କରିବାଠାରୁ ଜାଣିଶୁଣି ଅନୀତି କରିବା ବହୁତ ଖରାପ । ଭିତର ଓ ବାହାର ଏକ ପ୍ରକାର ହେଉ । ଏହା ବୁଝି କାମ କର ।

★★★

# ଅଧ୍ୟାୟ - ୯

# ଭଗବାନ ସମସ୍ତଙ୍କର

ମହାସାଗର । ଚାରିଆଡ଼େ ପାଣି ଆଉ ପାଣି । ଥଳକୂଳ କିଛି ନାହିଁ । ତା' ଭିତରେ ଚାଲିଛି ଜାହାଜଟିଏ । ବହୁତ ବଡ଼ ଜାହାଜ । ତା' ଦେହରେ ଅଛନ୍ତି ଶହ ଶହ ଯାତ୍ରୀ । ଭିନ୍ନ ଭିନ୍ନ ଦେଶର ଲୋକ ସେମାନେ । ଭିନ୍ନ ଭିନ୍ନ ପୋଷାକ ପିନ୍ଧିଛନ୍ତି । ଭିନ୍ନ ଭିନ୍ନ ଭାଷା କହୁଛନ୍ତି । ଅଲଗା ଅଲଗା ଧର୍ମର ଲୋକ ସେମାନେ । ତେବେ ପ୍ରାୟ ସମସ୍ତେ ଇଂରାଜୀ ଭାଷା ବୁଝୁଥାନ୍ତି ।

ଜାହାଜ ଚାଲିଛି । ତା' ଭିତରେ ବସିଥିବା ଦଶବାର ଜଣ ଯାତ୍ରୀଙ୍କ ଭିତରେ କଥା ଚାଲିଥାଏ । ପଶ୍ଚିମା ଯାତ୍ରୀ ଜଣେ କହିଲେ - ସାକ୍ଷାତ୍ ଭଗବାନଙ୍କ ପୁତ୍ର ଆମ ଯୀଶୁ । ଭଗବାନ ପୂରାପୂରି ଆମର । ଆମ ଦେଶ, ଆମ ପୋଷାକ, ଆମ ଖ୍ରୀଷ୍ଟଧର୍ମ ସବୁଠାରୁ ଭଲ । ସେଥିପାଇଁ ଆମ ଲୋକମାନେ ଭଗବାନଙ୍କର ଅତି ପ୍ରିୟ ।

ଏତିକିବେଳେ ଆଉ ଜଣେ ଯାତ୍ରୀ ଚିହିଁକି ଉଠି କହିଲା - ଆରେ, ତମେ ଭଗବାନଙ୍କ କଥା ବୁଝିବ କ'ଣ ? ଭଗବାନ ଆମର । ଆରବ ଦେଶ ହେଲା ଧର୍ମର ଦେଶ । ଆମ ଆରବଙ୍କୁ ଭଗବାନ ତାଙ୍କ ଦୂତ ମହମ୍ମଦଙ୍କୁ ପଠାଇଥିଲେ । ଆମ ଇସଲାମ ଧର୍ମ, ଆମ ଦେଶ, ଆମ ଜାତି, ଆମ ଭାଷା, ଆମ ପୋଷାକ ସବୁଠାରୁ ଶ୍ରେଷ୍ଠ ।

ସେଠୁ ଜଣେ ଧୋତିପିନ୍ଧା ଲୋକ କହିଲେ - ଭଗବାନ ଆଉ କାହାରି ନୁହଁନ୍ତି, ଗୋଟାପଣେ ଆମର । ଆମ ହିନ୍ଦୁଧର୍ମ, ଆମ ଦେଶ, ଆମ ଭାଷା, ଆମ ନଦୀ ପର୍ବତ, ସବୁ ପବିତ୍ର ।

ଏମିତି ଆଉ ଚାରି ଜଣ ଯାତ୍ରୀ ଯେ ଯାହାର ଜାତି ଓ ଧର୍ମର ବଡ଼ାଇ କହିବାକୁ ଲାଗିଲେ । ସଭିଏଁ ଦାବୀ କରୁଥାନ୍ତି, ଭଗବାନ କେବଳ ତାଙ୍କ ଧର୍ମର , ତାଙ୍କ ଜାତିର । ଏତିକିବେଳେ ଜଣେ ସନ୍ଥ ସେଠି ପହଞ୍ଚିଲେ । ତାଙ୍କ ମୁହଁରେ ଜ୍ୟୋତି ଫୁଟି ଉଠୁଥାଏ । ସେ କହିଲେ :

ତୁମେମାନେ ଠିକ୍ କଥା ନ ବୁଝି ବୃଥାରେ ନିଜ ନିଜ ଭିତରେ କଳହ କରୁଛ । ଜାତି ଅନେକ । ଧର୍ମମତ ଅନେକ । କିନ୍ତୁ ଧର୍ମ ଏକ । ଭଗବାନ ଏକ । ଗୋଟାଏ ଜାତି କିମ୍ବା ଗୋଟାଏ ଧର୍ମମତ ପାଇଁ ଅଲଗା ଭଗବାନ ନାହାନ୍ତି । ଭଗବାନ ସବୁ ଦେଶରେ, ସବୁଠି ଅଛନ୍ତି । ସବୁ କାଳରେ ଅଛନ୍ତି । ସବୁ ପ୍ରାଣୀ ଭିତରେ ଓ ସବୁ ବସ୍ତୁ ଭିତରେ ସେ ଅଛନ୍ତି । ଭଗବାନ ସମସ୍ତଙ୍କର । ତେଣୁ ସବୁ ଦେଶ, ସବୁ ଜାତି, ଧର୍ମମତ, ଉଚ୍ଚନୀଚ ସବୁ ଲୋକଙ୍କର ଭଗବାନଙ୍କୁ ପାଇବା ଅଧିକାର ଅଛି ।

ଭଗବାନ ସବୁ ପ୍ରାଣୀଙ୍କୁ ସୃଷ୍ଟି କରିଛନ୍ତି, ସତ । କିନ୍ତୁ କେବଳ ମନୁଷ୍ୟକୁ ସେ ଏକ ଅମୂଲ୍ୟ ଜିନିଷ ଦେଇଛନ୍ତି । ସେଇଟି ହେଲା ବିବେକ । ତା'ଦ୍ୱାରା ସେ ଭଲମନ୍ଦ ବିଚାର କରିପାରେ । ମନ୍ଦକୁ ଛାଡ଼ି ଭଲକୁ ଗ୍ରହଣ କରିପାରେ । ପଶୁପକ୍ଷୀମାନେ ବିବେକ ପାଇନାହାନ୍ତି । ସେମାନେ ଭଲମନ୍ଦ ବୁଝିପାରନ୍ତି ନାହିଁ । ଯେଉଁଆଡ଼େ ମନ ଗଲା, ସେଆଡ଼େ ପଶିଯାଆନ୍ତି ।

ଏଠି କଥା ଉଠିପାରେ, ତାହାହେଲେ ମନୁଷ୍ୟ ଭଲ ବାଟରେ ଯାଏ ନାହିଁ କାହିଁକି ? ତା' କାରଣ ହେଲା, ସେ ବିବେକ କଥା ମାନେ ନାହିଁ । ମନକୁ ଯାହା ଆସିଲା, ତାହା କରେ । 'ମୁଁ' ଓ 'ମୋ' କଥାରେ ବୁଡ଼ି ରହି ସେ ଭଗବାନଙ୍କୁ ଭୁଲିଯାଏ । ଏତିକି ମନେ ରଖ : ଯେ କୌଣସି ଦେଶ, ଜାତି, ଧର୍ମମତର ଏବଂ ଯେ କୌଣସି ବୟସର ଲୋକ ଭଗବାନଙ୍କୁ ପାଇପାରେ । ଅତି ନୀଚ ଲୋକ ବି ତାଙ୍କୁ ଆଶ୍ରା କଲେ

ପାଇପାରିବ । ଆମେ ଏ ସଂସାରର ନୋହୁ । ଆମେ ଭଗବାନଙ୍କର ଓ ଭଗବାନ ଆମର । ଭଗବାନଙ୍କ ଧାମ ହିଁ ଆମ ମୂଳ ଘର । ଆମ ଘରକୁ ଯେତେ ଶୀଘ୍ର ଫେରିଯିବା, ସେତେ ଭଲ ।

ଜଳକୁ ଆମେ ପାଣି କହୁ । ହିନ୍ଦୀରେ ତାକୁ ପାନୀ କହନ୍ତି । ତେଲୁଗୁରେ ନିଲୁ ଓ ଇଂରାଜୀରେ ୱାଟର କହନ୍ତି । କିନ୍ତୁ ଜଳର ଧର୍ମ ଏକ । ତାହା ହେଲା ସମତା ରକ୍ଷା କରିବା ଓ ତଳକୁ ବହିଯିବା । ସେହିପରି ସମସ୍ତଙ୍କର ଭଗବାନ ଏକ । ତାଙ୍କୁ କିଏ କେଉଁ ନାଁରେ ଡାକୁଛି ଡାକୁ । ସେ ଏକ ଏବଂ ତାଙ୍କର ଧର୍ମ ବି ଏକ । ଏହି ଭାବ ଆସିଲେ ଧର୍ମକୁ ନେଇ ଆଉ କଳହ ହେବ ନାହିଁ । ତାଙ୍କଠାରେ ପୂର୍ଣ୍ଣ ବିଶ୍ୱାସ ରଖିଲେ, ସେ ଆମର ସବୁ ପ୍ରକାର ମଙ୍ଗଳ କରିବେ ।

ଏହା କହି ସନ୍ତ ସେଠାରୁ ଚାଲିଗଲେ । ସନ୍ତ ଯାହା କହିଲେ, ତାହା ଗୀତାର ନବମ ଅଧ୍ୟାୟର ସାରକଥା । ଏହା ସମସ୍ତେ ମାନି ଚଳିବା ଉଚିତ ।

ଲୋକମାନେ ଭିନ୍ନ ଭିନ୍ନ ଦେବତାଙ୍କ ପୂଜା କରନ୍ତି । କିନ୍ତୁ ଠିକ୍ କଥା ବୁଝ । ସବୁ ଦେବତାଙ୍କ ପୂଜା ଏକ ଈଶ୍ୱରଙ୍କ ପାଖକୁ ଯାଏ । କାରଣ, ଈଶ୍ୱର ଏକ । ତେଣୁ ଭିନ୍ନ ଭିନ୍ନ ଧର୍ମମତର ଲୋକମାନେ ଝଗଡ଼ା କରିବା ଠିକ୍ ନୁହେଁ । ପୁଣି, ଗୋଟିଏ ଧର୍ମମତର ଲୋକକୁ ଅନ୍ୟ ଧର୍ମମତକୁ ଟାଣିନେବା ବୋକାମି ନୁହେଁ କି ?

ଭାବ ଥାଇ ସାମାନ୍ୟ ପତ୍ରଟିଏ କି ଫୁଲଟିଏ ଦେଲେ ଭଗବାନ ତାହା ଖୁସିରେ ଗ୍ରହଣ କରନ୍ତି । ଭାବ ନ ଥାଇ ଲଡୁପେଡ଼ା ହେଲେ ବି ସେ ତାହା ଗ୍ରହଣ କରିବେ ନାହିଁ । ତେଣୁ ଭକ୍ତିଭାବ ଥାଇ ତାଙ୍କୁ ଡାକ, ତାଙ୍କର ଉପାସନା କର । ତାହାହେଲେ ସେ ନିଶ୍ଚୟ ତୁମର କଲ୍ୟାଣ କରିବେ ।



# ଅଧ୍ୟାୟ - ୧୦

# ସୃଷ୍ଟି କଥା ନ ଭାବି ସ୍ରଷ୍ଟାଙ୍କଠାରେ ମନ ଲଗାଅ

ମଣିନାଗ ପର୍ବତରେ ହଜାର ହଜାର ନାଗସାପ ରହୁଥିଲେ । ମଣିଚୂଡ଼ ଥିଲା ସେମାନଙ୍କ ରାଜା । ମସ୍ତବଡ଼ ସାପ । ତା'ମଥାରେ ଥାଏ ଅମୂଲ୍ୟ ମଣିଟିଏ । ସେଇ ମଣିର ଆଲୁଅରେ ମଣିଚୂଡ଼ କୋଶେ ଦୂର ଯାଏଁ ବାଟ ଦେଖିପାରୁଥିଲା । ସେଇ ମଣି ପାଇବା ପାଇଁ ଅନେକ ରାଜା, ମହାରାଜା ଚେଷ୍ଟା କରୁଥାନ୍ତି ।

ଥରେ ରାଜା ମହାଘୋଷ ସେଇ ମଣି ପାଇଁ ତାଙ୍କ ମନ୍ତ୍ରୀଙ୍କୁ ପଠାଇଲେ । ମନ୍ତ୍ରୀ ବହୁତ ବୁଦ୍ଧିମାନ । ସାଥିରେ ଦଶ ଜଣ ସୈନ୍ୟ ଥାନ୍ତି । ସନ୍ଧ୍ୟାବେଳେ ସେ ମଣିନାଗ ପର୍ବତରେ ଚଢ଼ିଲେ । ସେତେବେଳେ ସବୁ ସାପ ପାଣି ପିଇବା ପାଇଁ ଦୂରରେ ଥିବା ଝରଣାକୁ ଚାଲିଯାଇଥାନ୍ତି । ମନ୍ତ୍ରୀ ଏଇ ସୁଯୋଗରେ ସାପରାଜାର ବିଳ ପାଖରେ ପହଞ୍ଚିଲେ । ଯୋଗକୁ ସେଦିନ ମଣିଚୂଡ଼ ତା' ମଣିଟି ଗାତ ଭିତରେ ଛାଡ଼ି ଯାଇଥିଲା । ତା' ଆଲୁଅରେ ଗାତ ଭିତର ଚିକ୍ ଚିକ୍ କରୁଥାଏ । ମନ୍ତ୍ରୀ ମଣିକୁ ସେଠାରୁ ଉଠାଇ ଆଣି ରାଜାଙ୍କୁ ଦେଲେ ।

ମହାଘୋଷଙ୍କ ପାଖରେ ମଣି ଥିବା କଥା ଧୀରେ ଧୀରେ ଚାରିଆଡ଼େ ପ୍ରଚାର ହୋଇଗଲା । ଥରେ ସେଇ ମଣି ଲୋଭରେ ପଡ଼ୋଶୀ ରାଜା ମହାଘୋଷଙ୍କ ରାଜ୍ୟ ଆକ୍ରମଣ କଲେ । ମହାଘୋଷ ପରାସ୍ତ ହେଲେ । ମଣି ପଡ଼ିଲା ବିଜୟୀ ରାଜାଙ୍କ ହାତରେ ।

କିଛି ଦିନ ପରେ ହଠାତ୍ ରାତିରେ ଦଳେ ଡକାୟତ ଏଇ ରାଜାଙ୍କ ନଅରରେ ପଶିଲେ । ସେମାନେ ରାଜାଙ୍କୁ ହତ୍ୟା କରି ମଣି ନେଇ ଚାଲିଗଲେ । ରାଜ୍ୟରେ ହାହାକାର ପଡ଼ିଲା । ଲୋକମାନେ କୁହାକୁହି ହେଲେ - ମଣି ପାଇଁ ହିଁ ରାଜାଙ୍କର ପ୍ରାଣ ଗଲା ।

ଏଣେ ଡକାୟତ ଦଳ ମଣିଟି ନେଇ ସେମାନଙ୍କ ସର୍ଦ୍ଦାରକୁ ଦେଲେ । ସେଇ ମଣିଟି ଉପରେ ସର୍ଦ୍ଦାରର ଶଳାର ଆଖି ଥାଏ । ମଣି ପାଇଁ ସର୍ଦ୍ଦାର ଓ ତା' ଶଳା ଭିତରେ ଲାଗିଗଲା ଗୋଳମାଳ । ଡକାୟତମାନେ ଦୁଇ ଦଳ ହୋଇ ନିଜ ନିଜ ଭିତରେ ଲଢ଼େଇ କରୁଥାନ୍ତି । ଏତିକିବେଳେ ସେଇ ବାଟ ଦେଇ ଜଣେ ବୁଢ଼ା ସାଧୁ ଯାଉଥିଲେ । ସର୍ଦ୍ଦାର ତାଙ୍କୁ ଡାକି କଳହ ନିଷ୍ପତ୍ତି କରିବାକୁ ଅନୁରୋଧ କଲା ।

ସାଧୁ କହିଲେ - ଦେଖ, ଏ ମଣି ତୁମର ନୁହେଁ । ଏଇଟି ଲାଗି ଜଣେ ରାଜା ମଲେ । ଏହା ତାଙ୍କର ନୁହେଁ । ମଣି ଖୋଜାଇ ଆଣିଥିବା ମହାଘୋଷଙ୍କର ବି ସେଇଟି ନୁହେଁ । ଏପରି କି, ମଣିଟି ମଣିଚୂଡ଼ ସାପର ବି ନୁହେଁ । କାରଣ ମଣିଟି ତା' ନିଜର ହୋଇଥିଲେ, ତା' ପାଖରୁ ସେଇଟି କେହି ନେଇପାରନ୍ତେ ନାହିଁ ।

ଏଠି ଗୋଟାଏ କଥା ବୁଝ । ଯାହା ଆମ ପାଖରେ କାଳକାଳକୁ ରହିପାରିବ, ସେଇଟି ହିଁ ଆମର । କଥା ଦେଖିଲେ, ସଂସାରର କୌଣସି ଜିନିଷ ସବୁ କାଳରେ ଆମର ହୋଇ ରହିବ ନାହିଁ । ତେଣୁ କୌଣସି ଜିନିଷ ଆମର ନୁହେଁ ।

ନାଗ ପାଖରେ ମଣି ଥିବାରୁ ସେ ହେଲା ମଣିନାଗ । ସେହିପରି ସଂସାରରେ ଯେତେ ଜିନିଷ ଅଛି, ସେଥି ଭିତରେ ଥିବା ଶ୍ରେଷ୍ଠ ବା ମଣି ହେଲେ ଏ ସଂସାରର ସ୍ରଷ୍ଟା ଭଗବାନ । ତେଣୁ ସୃଷ୍ଟିର ଜିନିଷକୁ ନ ଦେଖି ତାର ସ୍ରଷ୍ଟାଙ୍କୁ ଦେଖିଲେ ପ୍ରକୃତ ଆନନ୍ଦ ମିଳେ ।

ଭଗବାନ କୋଟି କୋଟି ମଣିଷ ସୃଷ୍ଟି କରିଛନ୍ତି । କେଉଁ ମଣିଷର ବହୁତ ଜ୍ଞାନ ଅଛି । କାହାର ବହୁତ ବଳ ଅଛି । ଆଉ କାହାର ବହୁତ

ଧନ ଅଛି । କାହାର ରୂପ ଅବା ଅତି ସୁନ୍ଦର । କିନ୍ତୁ ଏ ଜ୍ଞାନ, ବଳ, ଧନ, ରୂପ ଆଦି ସବୁ ଦିନ ରହିବ ନାହିଁ । କାରଣ ଏ ସବୁ ସଂସାରର ଜିନିଷ । ଏସବୁ ଜିନିଷ ସବୁଠାରୁ ଅଧିକ ଅଛି ଭଗବାନଙ୍କ ପାଖରେ । ତେଣୁ ମଣିଷ ନିଜ ରୂପ, ବଳ, ଧନ, ଜ୍ଞାନକୁ ବଡ଼ ବୋଲି ନ ଭାବୁ । ସବୁଠାରୁ ବଡ଼ ଯିଏ, ତାଙ୍କଠାରେ ମନ ଦେଉ ।

ଏହା କହି ସାଧୁ ତାଙ୍କ ବାଟରେ ଚାଲିଗଲେ । ଡକାୟତ ସର୍ଦ୍ଦାର ଓ ତା' ଶଳାର ମନ ବୁଝିଗଲା । ସେମାନେ ମଣିଟି ନେଇ ରାଧାକୃଷ୍ଣ ମନ୍ଦିରରେ ଦେଇଦେଲେ । ଏଣିକି ସେହି ମଣିଟି ମନ୍ଦିରର କୃଷ୍ଣଙ୍କ କିରୀଟରେ ଶୋଭା ପାଇଲା ।

ସାଧୁବାବା ଡକାୟତମାନଙ୍କୁ ଯାହା ବୁଝାଇଲେ, ତାହା ହେଲା ଗୀତାର ଦଶମ ଅଧ୍ୟାୟର ସାରକଥା । ତାକୁ ମାନି ଚଳିଲେ ଆମେ ଭଗବାନଙ୍କୁ ପାଇପାରିବା ।

ସବୁର ମୂଳ ହେଲେ ଭଗବାନ । ତାଙ୍କ ଇଚ୍ଛାରେ ତାଙ୍କଠାରୁ ସବୁ ଜାତ । ଏହା ବୁଝ । ତାଙ୍କଠାରେ ଭାବ ସହ ମନ ଲଗାଅ । ତାହାହେଲେ ସେ ତୁମକୁ ଶୁଭ ବୁଦ୍ଧି ଦେବେ । ଆଉ, ସେଇ ବୁଦ୍ଧି ବଳରେ ତୁମେ ତାଙ୍କର ପ୍ରିୟ ହୋଇପାରିବ ।



# ଅଧ୍ୟାୟ - ୧୧

# ଭଗବାନଙ୍କ ସ୍ୱରୂପ

ମହାଭାରତର ମଜା କଥାଟିଏ :

ଯୁଦ୍ଧ ଶେଷ ହୋଇଥାଏ । ଅଠର ଦିନର ଯୁଦ୍ଧରେ ପାଣ୍ଡବମାନେ ବିଜୟୀ ହୋଇଥାନ୍ତି । ପ୍ରତ୍ୟେକ ଭାବୁଥାନ୍ତି, ତାଙ୍କ ଲାଗି ହିଁ ସେମାନେ ଜିତିଲେ । ଯେ ଯାହାର ବାହାଦୂରୀ କହୁଥାନ୍ତି । କେବଳ ଯୁଧିଷ୍ଠିର ଚୁପ୍ ରହିଥାନ୍ତି ।

ଭୀମ କହିଲେ - ମୋ ଗଦା ମାଡ଼ରେ ସବୁ ବୀର ଟଳି ପଡ଼ିଲେ । ମୋ ଗଦା ଘୂରିଲେ, ଜାଣ, ଅଣଚାଶ ରୂପରେ ଆକାଶରେ ପବନ ଘୂରିବ ।

ସେଠୁ ଅର୍ଜୁନ କହିଲେ - ଯୁଦ୍ଧରେ ବିଜୟ ମୋ ଗାଣ୍ଡିବର କରାମତି । ମୋ ଧନୁ ପୃଥିବୀରେ ପ୍ରଳୟ ସୃଷ୍ଟି କରିବ ।

ଏହା ପରେ ନକୁଳ ଓ ସହଦେବ ବି ନିଜ ନିଜର ବୀରତ୍ୱ କଥା କହିଲେ । ଏତିକିବେଳେ ଶ୍ରୀକୃଷ୍ଣ ସେଠାରେ ଆସି ପହଞ୍ଚିଲେ । ପଚାରିଲେ- ଏଠି ଏମିତି ହୋ ହଲ୍ଲା ଲଗାଇଛ କାହିଁକି ? ଜିତିଲ ବୋଲି ଅହଙ୍କାରରେ ଫାଟି ପଡ଼ିବା ଠିକ୍ ନୁହେଁ; । କାହା ଲାଗି ଜିତିଲ, ଜାଣିବାକୁ ଚାହୁଁଛ ? ତାହାହେଲେ ଚାଲ, ବେଲାଳସେନର ମୁଣ୍ଡକୁ ପଚାରିବା ।

ଶ୍ରୀକୃଷ୍ଣ ପଚାରିବାରୁ ବେଲାଳସେନ କହିଲା - ପ୍ରଭୁ, ଯୁଦ୍ଧ ଆରମ୍ଭରୁ ଶେଷଯାଏଁ ମୁଁ କେବଳ ଗୋଟିଏ ଜିନିଷ ଦେଖିଛି ଓ ଗୋଟିଏ କଥା ଶୁଣିଛି । ଦେଖୁଥାଏ, ସୁଦର୍ଶନ ଚକ୍ର ଘୂରି ଘୂରି ଆସୁଛି ।

କେତେବେଳେ କାହାର ମୁଣ୍ଡ କାଟି ଚାଲିଯାଉଛି । ସେଇ ସମୟରେ ଶୁଭୁଛି ଶଙ୍ଖଧ୍ୱନି । ବାସ୍, ଏତିକି । ଆଉ କେହି କିଛି କରି ନାହାନ୍ତି ।

ଏବେ ପାଣ୍ଡବମାନେ ବୁଝିଗଲେ, ଯୁଦ୍ଧରେ ସେମାନେ କିଛି କରିନାହାନ୍ତି । ଯୁଦ୍ଧ କରାଇଛନ୍ତି ଭଗବାନ ଶ୍ରୀକୃଷ୍ଣ । ଯୁଦ୍ଧର ଫଳ ମଧ୍ୟ ଦେଇଛନ୍ତି ସେ । ଯୁଦ୍ଧରେ ସମସ୍ତେ ଯାହା ଦେଖୁଥିଲେ, ତାହା ଏକ ଭେଳିକି ।

ଯୁଦ୍ଧ ହେବା ପୂର୍ବର କଥା । ଅର୍ଜୁନ ନିଜ ଲୋକଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ମାରିବାକୁ ମନା କରିଦେଲେ । ଶ୍ରୀକୃଷ୍ଣ ବହୁତ ବୁଝାଇଲେ । ତଥାପି ଅର୍ଜୁନଙ୍କ ମନରୁ ମୋହ ପୂରା ଯାଉ ନ ଥାଏ । ଶେଷରେ ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ନିଜ ବିଶ୍ୱରୂପ ଦେଖାଇଲେ । ଅର୍ଜୁନ ତାଙ୍କ ଶରୀରରେ ଗୋଟିଏ ଭାଗରେ ସମଗ୍ର ବିଶ୍ୱ ଦେଖିଲେ । କୁରୁକ୍ଷେତ୍ର ଯୁଦ୍ଧକୁ ବି ଦେଖିଲେ । ତାଙ୍କ ମନ ବୁଝିଗଲା ।

ଦଶମ ଅଧ୍ୟାୟର ସାରକଥା ହେଲା, ଜଗତର ସବୁ ଜିନିଷ ଭିତରେ ଭଗବାନଙ୍କୁ ଦେଖିବା । ଗୀତାର ଏକାଦଶ ଅଧ୍ୟାୟର ସାରକଥା ହେଲା, ଭଗବାନଙ୍କ ଭିତରେ ସୃଷ୍ଟିର ସବୁ ଜିନିଷକୁ ଦେଖିବା । ଆମେ (ଜୀବାତ୍ମା) ଭଗବାନ (ପରମାତ୍ମା)ଙ୍କ ଏକ ଅଂଶ । ଅର୍ଜୁନଙ୍କ ପରି ଆମେ ପରମାତ୍ମାଙ୍କ ଶରଣ ଗଲେ ଆମେ ନିଜ ଆତ୍ମାକୁ ପରମାତ୍ମାଙ୍କ ସହିତ ଯୋଡ଼ି ଦେଇପାରିବା ।

କୁରୁକ୍ଷେତ୍ର ଯୁଦ୍ଧ ଥିଲା ଏକ ଭେଳିକି । ଦେଖିଲାବାଲା କହୁଥିଲେ, ଏ ଏମିତି କଲା, ସେ ସେମିତି କଲା । ହେଲେ, କଥା ଥିଲା ଆଉ ଠାଏଁ । ସେମିତି, ସଂସାରରେ ମୁଁ ଏୟା କଲି, ସେ ସେୟା କଲା ଡାକ ପଡୁଛି । କିନ୍ତୁ ଠିକ୍ ବୁଝିଲେ, କଲାବାଲା ଏମାନେ କେହି ନୁହନ୍ତି । ଭଗବାନ ସବୁ କରନ୍ତି । ସେ ପରା କହିଛନ୍ତି -

କରି କରାଉଥାଇ ମୁହିଁ । ମୋ ବିନା ଆନ ଗତି ନାହିଁ ।

★★★

# ଅଧ୍ୟାୟ - ୧୨

# ନିଜକୁ ଭଗବାନଙ୍କଠାରେ ଅର୍ପଣ କର

ଶ୍ରୀକୃଷ୍ଣଙ୍କ ଦ୍ୱାରିକା ଲୀଳାର କଥାଟିଏ : ସେତେବେଳେ ଶ୍ରୀକୃଷ୍ଣ ଦ୍ୱାରିକାର ରାଜା ଥାଆନ୍ତି । ତାଙ୍କର ଆଠଜଣ ପାଟରାଣୀ ଭାବୁଥିଲେ, ସେମାନେ ହିଁ ଶ୍ରୀକୃଷ୍ଣଙ୍କୁ ସବୁଠାରୁ ଅଧିକ ଭଲ ପାଉଥିଲେ । ସେମାନଙ୍କର ଏହି ଅହଙ୍କାର ଭାଙ୍ଗିବା ପାଇଁ ଶ୍ରୀକୃଷ୍ଣ ଗୋଟିଏ ମଜା ଉପାୟ କଲେ । ଦିନେ ନିଜର ପେଟକୁ ଚାପି ଧରି ମିଛରେ ପାଟି କଲେ - ଓଃ, ଭୀଷଣ ପେଟବଥା ! ମୁଁ ସମ୍ଭାଳି ପାରୁନି । ପ୍ରାଣ ଚାଲିଗଲା ପରି ଲାଗୁଛି ।

ରାଣୀମାନେ ଏଥିରେ ଛାନିଆ ହୋଇଗଲେ । ସେମାନେ ଶ୍ରୀକୃଷ୍ଣଙ୍କ ପେଟକୁ ଆଉଁସି କାନ୍ଦୁଥାନ୍ତି । ରାଜବୈଦ୍ୟ ଆସିଲେ । ଔଷଧ ଦେଲେ । ତେବେ ପେଟବଥା ଟିକିଏ ବି କମିଲା ନାହିଁ । ଶ୍ରୀକୃଷ୍ଣ ଛଟପଟ ହୋଇ ତଳେ ଏ ପାଖ ସେ ପାଖ ଗଡୁଥାନ୍ତି । କ'ଣ କରାଯିବ, କେହି ବୁଝିପାରୁ ନଥାନ୍ତି ।

ଶ୍ରୀକୃଷ୍ଣ କହିଲେ - ଏ ପେଟବଥାର ଗୋଟିଏ ମାତ୍ର ଔଷଧ ଅଛି । ତେବେ ତାହା ପାଇବା ସହଜ ନୁହେଁ । ମୋତେ ଯିଏ ସବୁଠାରୁ ବେଶୀ ଭଲ ପାଏ, ତାର ପାଦ ଧୂଳି ଟିକେ ଖାଇଦେଲେ ପେଟବଥା ଛାଡ଼ିଯିବ ।

ଅଦ୍‌ଭୂତ ଔଷଧ । ରାଣୀମାନେ ଭାବିଲେ- ପତି ହେଲେ ପୂଜ୍ୟ । ପୁଣି ଶ୍ରୀକୃଷ୍ଣ ସାକ୍ଷାତ୍ ପରମାତ୍ମା । ତାଙ୍କୁ ପାଦଧୂଳି ଦେଲେ ସେମାନେ ନର୍କରେ ପଡ଼ିବେ ।

ରାଣୀମାନେ ଚୁପ୍ ରହିବାରୁ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଡକାଇ କହିଲେ- ତୁମେ ଗୋପପୁର ଯାଇ ଗୋପୀମାନଙ୍କୁ ପାଦଧୂଳି ମାଗ । ଯଦି ଦେବେ, ତାହା ନେଇ ଆସିବ ।

ଉଦ୍ଧବ ଗୋପପୁର ଯାଇ ଗୋପୀମାନଙ୍କୁ କହିଲେ - ଶ୍ରୀକୃଷ୍ଣଙ୍କ ଭୟଙ୍କର ପେଟବଥା । ଔଷଧ କାମ ଦେଲା ନାହିଁ । ତୁମ ପାଦଧୂଳି ଟିକେ ଖାଇଦେଲେ ତାହା ଛାଡ଼ିଯିବ । ଦେଇପାରିବ ? ହଁ, ମନେ ରଖ । ଶ୍ରୀକୃଷ୍ଣଙ୍କୁ ପାଦଧୂଳି ଦେଲେ ତୁମକୁ ନର୍କ ଭୋଗିବାକୁ ପଡ଼ିପାରେ ।

ଗୋପୀମାନେ ସାଙ୍ଗେ ସାଙ୍ଗେ ପାଦଧୂଳି ଦେଇ କହିଲେ - ଆମ କୃଷ୍ଣ ଭଲ ଥାଆନ୍ତୁ । ଆମେ ଚିରକାଳ ନର୍କରେ ଥିଲେ ଦୁଃଖ ନାହିଁ ।

ଗୋପୀମାନଙ୍କଠାରୁ ପାଦଧୂଳି ଆଣି ଉଦ୍ଧବ ଶ୍ରୀକୃଷ୍ଣଙ୍କୁ ଦେଲେ । ତାହା ପାଇ ଶ୍ରୀକୃଷ୍ଣଙ୍କ ପେଟବଥା ଛାଡ଼ିଗଲା । ତାଙ୍କ ରାଣୀମାନଙ୍କର ଗର୍ବ ଚୂରମାର ହୋଇଗଲା ।

ଏ କଥାର ମୂଳ ଭାବ ବୁଝ । ଆମେ ଆମ ଦେହ, ମନ, ବୁଦ୍ଧି, ଆମର ସବୁକିଛି ଭଗବାନଙ୍କୁ ଟେକି ଦେବା । ତାପରେ ଆମର ହୋଇ ଆଉ ରହିବ କଣ ? କେବଳ ରହିବେ ଭଗବାନ । ଏହାକୁ କହନ୍ତି ଭକ୍ତି । ଭକ୍ତି ହେଲା ଭଗବାନଙ୍କର ଅତି ପ୍ରିୟ । ଭକ୍ତ ଯାହା ଚାହିଁବ, ତାହା ହେବ । ସେ ଚାହିଁଲେ ଭଗବାନଙ୍କ ପାଖକୁ ଯାଇପାରିବ । ସେ ଚାହିଁଲେ ଭଗବାନଙ୍କୁ ତା' ପାଖକୁ ଟାଣି ଆଣିପାରିବ । ପ୍ରକୃତ ଭକ୍ତିର ଶକ୍ତି ଏହିପରି । ଏହା ବୁଝି ତା' ଅନୁସାରେ କାମ କର ।



# ଅଧ୍ୟାୟ - ୧୩

# ଭଗବାନଙ୍କୁ ଜାଣ

ଅନେକ ଦିନ ତଳର କଥା । ସେତେବେଳେ ଉଜ୍ଜୟିନୀର ରାଜା ଥିଲେ ଭୋଜ । ତାଙ୍କ ରାଜସଭାରେ ନବରତ୍ନ ପଣ୍ଡିତମାନେ ଥିଲେ । କାଳିଦାସ ଥିଲେ ସର୍ବଶ୍ରେଷ୍ଠ ରତ୍ନ । ଦିନେ ଜଣେ ବିଦେଶୀ ପଣ୍ଡିତ ଭୋଜଙ୍କ ସଭାରେ ପହଞ୍ଚିଲେ । ସେ କହିଲେ - ଏ ସଭାର ପଣ୍ଡିତମାନଙ୍କୁ ମୁଁ ସାତଟି ପ୍ରଶ୍ନ ପଚାରିବି । ଜଣେ ପଣ୍ଡିତ ସବୁ ପ୍ରଶ୍ନର ଉତ୍ତର ବୁଝାଇ କହିବେ ।

ରାଜା ଭୋଜ କାଳିଦାସଙ୍କ ଆଡ଼େ ଚାହିଁଲେ । ତେଣୁ କାଳିଦାସ ଠିଆ ହୋଇ କହିଲେ - ଠିକ୍ ଅଛି, ଆପଣ ପଚାରନ୍ତୁ । ମୁଁ ସବୁ ପ୍ରଶ୍ନର ଉତ୍ତର ଦେବି ।

ବିଦେଶୀ ପଣ୍ଡିତ ପ୍ରଥମ ପ୍ରଶ୍ନ ପଚାରିଲେ - ଭଗବାନ କେଉଁଠି ରହନ୍ତି ?

କାଳିଦାସ କହିଲେ - ସବୁଠି । କ୍ଷୀର ଭିତରେ ଲହୁଣୀ ଯେପରି ସବୁଠି ଅଛି, ସେହିପରି ଭଗବାନ ସମସ୍ତ ବିଶ୍ୱବ୍ରହ୍ମାଣ୍ଡରେ ବ୍ୟାପି ରହିଛନ୍ତି ।

ବିଦେଶୀ ପଣ୍ଡିତଙ୍କ ଦ୍ୱିତୀୟ ପ୍ରଶ୍ନ ଥିଲା - ଭଗବାନ ପ୍ରାଣୀମାନଙ୍କ ଭିତରେ ଅଛନ୍ତି, ନା ବାହାରେ ଅଛନ୍ତି ?

କାଳିଦାସ କହିଲେ - ଭଗବାନ ପ୍ରାଣୀମାନଙ୍କ ଭିତରେ ଅଛନ୍ତି, ବାହାରେ ବି ଅଛନ୍ତି, ଠିକ୍ ଯେମିତି ଖାଲି ମାଠିଆ ଭିତରେ ବାୟୁ ଅଛି ଏବଂ ମାଠିଆର ବାହାରେ ବି ବାୟୁ ଅଛି ।

ବିଦେଶୀ ପଣ୍ଡିତଙ୍କ ତୃତୀୟ ପ୍ରଶ୍ନ : ଭଗବାନ ଯଦି ସବୁଠି ଅଛନ୍ତି, ତେବେ ସେ ଏକ, ନା ଅନେକ ?

କାଳିଦାସ - ଭଗବାନ ପ୍ରକୃତରେ ଏକ । ଯେମିତି ଜଳ ଏକ ପ୍ରକାର ବସ୍ତୁ, କିନ୍ତୁ ତାହା ଅନେକ ରୂପରେ କୂଅ, ପୋଖରୀ, ନଦୀ ଓ ସମୁଦ୍ରରେ ଦେଖାଯାଏ ।

ପଣ୍ଡିତଙ୍କ ଚତୁର୍ଥ ପ୍ରଶ୍ନ : କୋଟି କୋଟି ପ୍ରାଣୀଙ୍କୁ ଭଗବାନ କିପରି ପାଳନପୋଷଣ କରନ୍ତି ?

କାଳିଦାସ - ବୁଝିବାକୁ ଗଲେ, ଭଗବାନ ସବୁ କରନ୍ତି, ପୁଣି କିଛି କରନ୍ତି ନାହିଁ । ଭଗବାନଙ୍କ ସଂକଳ୍ପ ବା ଇଚ୍ଛାରେ ସବୁକିଛି ହୁଏ । ଥରେ ସଂକଳ୍ପ ହେଲେ ତା' ଅନୁସାରେ କାମ ଚାଲୁ ରହେ । ସୃଷ୍ଟିରେ ସବୁ ପ୍ରାଣୀଙ୍କ ପାଇଁ ସେ ଆଗରୁ ଆହାର ରଖିଛନ୍ତି । ଗଛଲତା, ଫଳମୂଳ, ପାଣିପବନ, ସବୁ ତାଙ୍କରି ଦାନ । ମାଆର ସ୍ତନରେ ସେ ହିଁ ଛୁଆ ପାଇଁ ଆହାର ରଖିଛନ୍ତି । ଏହିପରି ସେ ସମସ୍ତଙ୍କର ପାଳନପୋଷଣ କରନ୍ତି ।

ବିଦେଶୀ ପଣ୍ଡିତଙ୍କ ପଞ୍ଚମ ପ୍ରଶ୍ନ : ଭଗବାନ ଗୋଟିଏ ସ୍ଥାନରେ ରହନ୍ତି, ନା ଏଣେତେଣେ ଯାଆନ୍ତି ?

କାଳିଦାସ - ଭଗବାନ କୁଆଡ଼େ ଯାଆନ୍ତି ନାହିଁ । ଅନନ୍ତ ନାଗ କୋଳରେ ଆରାମରେ ଶୋଇଥାନ୍ତି । କିନ୍ତୁ ଭକ୍ତ ଡାକିବା ମାତ୍ରେ ତା' ପାଖକୁ ଚାଲିଯାଆନ୍ତି । ଏ କଥା ପୁରାଣରୁ ଜଣାଯାଏ ।

ବିଦେଶୀ ପଣ୍ଡିତଙ୍କ ଷଷ୍ଠ ପ୍ରଶ୍ନ : ମଣିଷ ଭିତରେ କି କି ଦୁଇଟି ଜିନିଷ ଅଛି ?

କାଳିଦାସ - ଗୋଟିଏ ହେଲା ମଣିଷର ଦେହ ବା କ୍ଷେତ୍ର । ଏହା ମଣିଷର ବାହାର ରୂପ । ଏଇ ଦେହ ବା କ୍ଷେତ୍ରକୁ ଯିଏ ଜାଣେ, ସେ ହେଲା କ୍ଷେତ୍ରଜ୍ଞ ବା ଆତ୍ମା । ଦେହର ଯେଉଁ ଜିନିଷ ବଦଳେ, ତାକୁ

ପ୍ରକୃତି ବୋଲି ବି କହନ୍ତି । ଦେହର ଯେଉଁ ଜିନିଷ ବଦଳେ ନାହିଁ, ତାକୁ ପୁରୁଷ (ଆତ୍ମା) ବୋଲି କହନ୍ତି ।

ବିଦେଶୀ ପଣ୍ଡିତ଼ଙ୍କ ସପ୍ତମ ପ୍ରଶ୍ନ : ସଂସାରରେ କେଉଁ ଗୋଟିଏ ଜିନିଷ ଜାଣିବା ନିତାନ୍ତ ଆବଶ୍ୟକ ?

କାଳିଦାସ - ପରମାତ୍ମା ତତ୍ତ୍ୱ, ମାନେ ଈଶ୍ୱରଙ୍କ ବିଷୟ । ଏହା ଜାଣିବା ଲୋକ ଏ ସଂସାର ବନ୍ଧନରୁ ମୁକ୍ତି ପାଇ ଭଗବାନଙ୍କ ପାଖରେ ପହଞ୍ଚିଯାଏ ।

କାଳିଦାସଙ୍କ ଉତ୍ତର ଶୁଣି ବିଦେଶୀ ପଣ୍ଡିତ ତାଙ୍କୁ ଧନ୍ୟ ଧନ୍ୟ କଲେ । ରାଜା ଭୋଜ ବିଦେଶୀ ପଣ୍ଡିତ ଓ କାଳିଦାସଙ୍କୁ ମୂଲ୍ୟବାନ ପୁରସ୍କାର ଦେଲେ ।

କାଳିଦାସଙ୍କ ସାତଟି ଉତ୍ତର ହେଲା ଗୀତାର ତ୍ରୟୋଦଶ ଅଧ୍ୟାୟର ସାରକଥା ।

ଚାଷ, ବ୍ୟବସାୟ, ଡାକ୍ତରୀ, ଇଞ୍ଜିନିଅରିଂ ଆଦି ସଂସାରିକ ବିଦ୍ୟା । କିନ୍ତୁ ଏସବୁ ପ୍ରକୃତ ଜ୍ଞାନ ନୁହେଁ । କାରଣ ଏସବୁ ହେଲା ସଂସାରର ଜିନିଷ । ସଂସାର ଦିନେ ନଷ୍ଟ ହେବ । ଆମ ଦେହ ଦିନେ ନଷ୍ଟ ହେବ । କିନ୍ତୁ ଆମ ଦେହର ଚାଳକ 'ଆତ୍ମା' ନଷ୍ଟ ହେବ ନାହିଁ । ସେହିପରି ଏ ସଂସାରର ଚାଳକ ପରମାତ୍ମା ସବୁ କାଳରେ ଅଛନ୍ତି । ତାଙ୍କୁ ଜାଣିବା ହିଁ ପ୍ରକୃତ ଜ୍ଞାନ । ଏ ଜ୍ଞାନ ନ ଥିଲେ ଆମର ଅନ୍ୟ ସଂସାରିକ ଜ୍ଞାନର ମୂଲ୍ୟ କିଛି ନାହିଁ । ଏହା ଠିକ୍ ବୁଝିଲେ ଆମେ ଅମର ହୋଇଯିବା ।

★★★

# ଅଧ୍ୟାୟ - ୧୪

# ନିଜ ଭଲ ନିଜେ ବୁଝ

ଜଣେ ଧନୀ ବ୍ୟବସାୟୀ ବିଦେଶରେ ରହୁଥିଲେ । ବର୍ଷରେ ଥରେ ଘରକୁ ଆସୁଥିଲେ । ଘରେ ତାଙ୍କ ସ୍ତ୍ରୀ ଓ ତିନି ପୁଅ ଥାଆନ୍ତି ।

ବଡ଼ ପୁଅ ସତୀଶ ପାଠ ପଢ଼ି ବ୍ୟବସାୟ କଲା । ତେବେ ସେଥିରେ ତା' ମନ ମାନୁ ନ ଥାଏ । ପୂଜାପାଠ, ଧର୍ମକର୍ମରେ ତା' ମନ ଥାଏ । ନିତି ଭଗବାନଙ୍କୁ ପ୍ରାର୍ଥନା କରେ । ସାଧୁସନ୍ଥ କେଉଁଠାକୁ ଆସିଲେ, ଦୋକାନ ଛାଡ଼ି ଚାଲିଯାଏ । ଦୁଷ୍ଟ, ନିଶାଖୋର ଆଦି ଲୋକଙ୍କଠାରୁ ଦୂରେଇ ରହେ ।

ମଝିଆ ପୁଅ ନାଁ ରାଜେଶ । ବ୍ୟବସାୟରେ ମୁଣ୍ଡ ଖଟାଇ ବେଶ୍ ଲାଭ କରେ । ରୁଚିକର ଖାଦ୍ୟ, ଦାମିକା ପୋଷାକ ଓ ବିଳାସ ଜିନିଷ ଥିବା ଘର ତାକୁ ଭଲ ଲାଗେ । ବଡ଼ ଭାଇଙ୍କ କଥା ତାକୁ ଭଲ ଲାଗେ ନାହିଁ । ଅମାନିଆ ସାନଭାଇକୁ କେବେ କେମିତି ତାଗିଦ କରେ । ହେଲେ କିଛି ଫଳ ହୁଏ ନାହିଁ ।

ସାନ ପୁଅର ନାଁ ତାମସ । କ୍ରୋଧୀ ଯେମିତି, ଅଳସୁଆ ସେମିତି । କାହାରି କଥା ମାନେନି । ଯାହା ଚାହେଁ, ତାହା କରେ । ପଂଝାଏ ଲଫଙ୍ଗା, ଗୁଣ୍ଡା ଯୁବକଙ୍କ ମେଳରେ ରହେ । ବେଳେ ବେଳେ ମଦ ପିଏ । ସେ ଭାବେ, ବଡ଼ ଭାଇ ପୂରା ବୋକା । କିରେ, ଏ ବାବାଜୀଗୁଡ଼ାକଙ୍କ ପିଛା ଧରିବ କିଆଁ ? ଆଉ କିଛି ଧନ୍ଦା ନ ଥିଲେ ବାବାଜୀ ସାଜ । ଆଉ, ଭଗବାନ, ଭଗବାନ ବୋଲି ମିଛରେ ରଡ଼ି ଛାଡୁଥାଅ । ଭଗବାନ କିଏ ?

ଖାଉପିଇ, ହସିଖେଳି ଦିନ ବିତାଅ । ଯାହା ଭୋଗ ଏ ଜୀବନରେ କରିଯାଅ । ମଲ ତ ଗଲ ।

ଥରେ ସେହି ଧନୀ ଲୋକ ବେମାର ପଡ଼ିଲେ । ତେଣୁ ସେ ଦୁଇ ମାସ ଧରି ଘରେ ରହିଲେ । ସୁସ୍ଥ ହେବା ପରେ ଦିନେ ସେ ତାଙ୍କ ତିନିପୁଅଙ୍କୁ ପାଖକୁ ଡାକି କହିଲେ - ଦେଖ, ମୁଁ ସବୁବେଳେ ବିଦେଶରେ ରହିଲି । ତେଣୁ ତୁମ୍ଭେମାନେ ଏ ଘରର ଚଳଣି ମାନି ଚଳିବା କଥା । ତେବେ ତୁମେ ତିନି ଜଣ ଯାହା ମନକୁ ଆସିଲା, ତାହା କରୁଛ । ଏଣିକି ମୋ' କଥା ମାନି ଚଳ । ତୁମେ ସୁଖୀ ହେବ ।

ସତୀଶ, ତୁ ଏ ଘରର ବଡ଼ ପୁଅ । ଭଗବାନଙ୍କଠାରେ ମନ ଦେଇଛୁ । ଭଲ କଥା । ହେଲେ ମୁଁ ଭଗବାନଙ୍କ ବିଷୟରେ ଜାଣିଛି ବୋଲି ମନରେ ଅହଙ୍କାର କର ନାହିଁ । କର୍ତ୍ତବ୍ୟରେ ହେଳା କର ନାହିଁ ।

ରାଜେଶ' ଏବେ ତୋ' କଥା କହୁଛି, ଶୁଣ । ଘର ଚଳାଇବା ପାଇଁ ବେପାର କର । କିନ୍ତୁ ତା' ଭିତରେ ପୂରା ବୁଡ଼ିଯାଅ ନାହିଁ । ଲାଭ ପାଇଁ କୁକର୍ମ କର ନାହିଁ । ଭଲମନ୍ଦ ବୁଝି ବିଚାରି କାମ କର । ଭଗବାନଙ୍କ ଉପରେ ଭରସା ରଖି କର୍ତ୍ତବ୍ୟ କରିଯାଅ । ଫଳ ଭଲ ହେଲେ ନିଜର ବାହାଦୂରୀ ଦେଖାଅ ନାହିଁ । ଫଳ ଖରାପ ହେଲେ ଅନ୍ୟକୁ ଦୋଷ ଦିଅ ନାହିଁ । ସବୁଠି ସମାନ ଭାବ ରଖ ।

ଆଉ ତାମସ, ତୁ ବାଟବଣା ହୋଇଯାଇଛୁ । ଯେଉଁସବୁ ଜିନିଷ ତୋତେ ଭଲ ଲାଗୁଛି, ତାହା ସବୁ ଦିନ ରହିବ ନାହିଁ । ମନ୍ଦ ଅଭ୍ୟାସ, ମନ୍ଦ ସଙ୍ଗ, ମନ୍ଦ ବିଚାର ଛାଡ଼ । ଆଗେ ମଝିଆ ଭାଇ ପରି ହେବାକୁ ଚେଷ୍ଟାକର । ତାପରେ ବଡ଼ ଭାଇ ପରି ହେବୁ । ଭଲ ବିଚାର କରି ଆଗେଇ ଗଲେ ତୁ ବି ଭଗବାନଙ୍କର ପ୍ରିୟ ହୋଇପାରିବୁ ।

ଧନୀ ବ୍ୟବସାୟୀ ଯାହା କହିଲେ, ତାହା ହେଲା ଗୀତାର ଅଧ୍ୟାୟ - ୧୪ର ସାରକଥା । ପ୍ରକୃତି ଭଳି ମଣିଷ ଭିତରେ ତିନୋଟି

ଗୁଣ ଅଛି : ସତ୍ତ୍ୱ (ଉତ୍ତମ), ରଜ(ମଧ୍ୟମ) ଓ ତମ (ମନ୍ଦ) । ପ୍ରକୃତରେ ଆତ୍ମା ସହିତ ଏ ଗୁଣମାନଙ୍କର କିଛି ସମ୍ବନ୍ଧ ନ ଥାଏ । କିନ୍ତୁ ମନୁଷ୍ୟ କିଛି ବୁଝି ନ ପାରି ସେଥିରୁ ଗୋଟିଏ ଗୁଣକୁ ଆପଣେଇ ନିଏ । ବୁଝିପାରିବା ଲୋକ ରଜ ଓ ତମ ଗୁଣକୁ ନିଜ ଭିତରେ ଦବାଇ ରଖେ । ତେଣୁ ସେ ଭଲ ଲୋକ ହୁଏ । ସାଧାରଣ ମଧ୍ୟମ ଧରଣର ଲୋକ ସତ୍ତ୍ୱ ଓ ତମ ଗୁଣକୁ ଦବାଇ ରଖେ । ଦୁଷ୍ଟ ଲୋକ ତମ ଗୁଣକୁ ଉପରକୁ ଉଠାଇ ସତ୍ତ୍ୱ ଓ ରଜଗୁଣକୁ ତଳକୁ ଦବାଇ ରଖେ । ଆଉ କେତେକ ଲୋକଙ୍କ ଭିତରେ ଦୁଇ ଗୁଣ ଏକାଠି ଦେଖିବାକୁ ମିଳେ । ତେଣୁ ସେମାନଙ୍କ ଭିତରେ ଭଲ ଓ ମନ୍ଦ ଗୁଣ ଏକାଠି ଥିବା ଦେଖାଯାଏ । ଏଇ ତିନୋଟି ଗୁଣରେ ବାନ୍ଧି ନ ହୋଇ ମନୁଷ୍ୟ ସବୁଠି ସମାନ ଭାବ ରଖିଲେ ଭଗବାନଙ୍କର ପ୍ରିୟ ହୋଇପାରିବ ।

ଆମେ ଏ ସଂସାରରେ ଜନ୍ମ ନେଲେ । ଏଠି ଆମେ ନାନା ପ୍ରକାର ଲୋକଙ୍କୁ ଦେଖିବା । କିଏ ଭଲ ତ କିଏ ଖରାପ । କିଏ ଅବା ମଝିମଝିଆ; ମାନେ ଭଲମନ୍ଦ ମିଶାମିଶି । ଏ ଅବସ୍ଥାରେ ଆମେ କଣ କରିବା ? କରିବା ଏମିତି । ଆମଠାରୁ ଭଲ ଲୋକର ଗୁଣକୁ ନିଜର କରିନେବା । ସିଡ଼ିରେ ଚଢ଼ିଲା ଭଳି ଆମେ ଧୀରେ ଧୀରେ ଭଲ ଆଡ଼କୁ ଆଗେଇବା । ସବୁଠାରୁ ଭଲ ହେବ, ଯଦି ଆମେ ସବୁ ଛାଡ଼ି ଭଗବାନଙ୍କଠାରେ ମନପ୍ରାଣ ଢାଳିଦେବା । ଏମିତି କଲେ ଆମେ ସଂସାରର ବନ୍ଧନରୁ ମୁକୁଳିଯିବା ।



## ଅଧ୍ୟାୟ - ୧୫

# ସବୁରି ମୂଳରେ ପରମାତ୍ମା

ଜଣେ ଚାଷୀ ଜମି ଚାଷ କଲାବେଳେ ତା' ଲଙ୍ଗଳ ମୁନ ଲାଗି ଭୂମି ଭିତରୁ ସୁନା ଲୋଟାଟିଏ ବାହାରି ଆସିଲା । ଚାଷୀ ବିଚରା ଗରିବ ହେଲେ ବି ଭାରି ଭଲ ଲୋକ ଥିଲା । ଭାବିଲା - ଏ ସୁନା ଲୋଟା ମୋର ନୁହେଁ । ଏହା ଜମି ମାଲିକଙ୍କର । ଜମି ଯାହାର, ଲୋଟା ତାହାର ।

ଚାଷୀ ସୁନା ଲୋଟାଟି ଜମି ମାଲିକଙ୍କୁ ଦେଇ କହିଲା - ଏ ସୁନା ଲୋଟାଟି ଆପଣଙ୍କ ଜମିରେ ଥିଲା । ଏହା ଆପଣଙ୍କର । ଏହାକୁ ନିଅନ୍ତୁ ।

ଜମିମାଲିକ କହିଲେ - କିରେ, ଏ ଲୋଟାକୁ ମୁଁ କାହିଁକି ନେବି ? ତୁ ଜମି ଚଷିଲୁ । ପରିଶ୍ରମ କଲୁ । ତୋ' ପରିଶ୍ରମ ଲାଗି ଏ ଲୋଟା ମିଳିଲା । ଏହାକୁ ତୁ ନେ । ମୁଁ ନେବି ନାହିଁ ।

ଚାଷୀ କହିଲା - ଲୋଟା ପାଇଁ ମୁଁ ଜମି ଚାଷ କରି ନାହିଁ । ଶସ୍ୟ ପାଇଁ ଚାଷ କରିଛି । ମୁଁ ପରଧନ ନେଇ ନର୍କରେ ପଡ଼ିବି କାହିଁକି ?

ଜମିମାଲିକ ଭାବିଲେ, ସବୁ ଜମିର ମାଲିକ ହେଲେ ରାଜା । ତେଣୁ ସେ ସୁନାଲୋଟା ନେଇ ରାଜାଙ୍କୁ ସବୁ କଥା କହିଲେ । ରାଜା କହିଲେ - ଏ ସୁନା ଲୋଟାକୁ ଚାଷୀ ନେଲା ନାହିଁ, ତୁମେ ନେଲ ନାହିଁ । ତାକୁ ମୁଁ ନେଲେ ମୋର ବି ଅଧର୍ମ ହେବ ।

ସଭା ପଣ୍ଡିତମାନେ ଏ ବିଷୟରେ ଆଲୋଚନା କଲେ । ଶେଷରେ ଜଣେ ବୁଢ଼ା ପଣ୍ଡିତ କହିଲେ - ମହାରାଜ, ଏହା ସାଧାରଣ କଥା ନୁହେଁ, ଭାରି ଗୂଢ଼ କଥା । ଆମ ନିଷ୍ପତ୍ତି ଆପଣଙ୍କୁ ବୁଝାଇ କହୁଛୁ, ଶୁଣନ୍ତୁ :

ଏ ଲୋଟାଟି ଚାଷୀର ନୁହେଁ, କି ଜମିମାଲିକର ନୁହେଁ । ଏଇଟି ଆପଣଙ୍କର ବି ନୁହେଁ । କାରଣ ଏ ଲୋଟା ହେଲା ସଂସାରର ଗୋଟାଏ ଜିନିଷ । ସଂସାରର କୌଣସି ଜିନିଷ ଆମର ନୁହେଁ । କାରଣ ଆମେ ଏଥିରୁ କୌଣସି ଗୋଟାଏ ବି ଜନ୍ମ ହେଲା ବେଳକୁ ସାଙ୍ଗରେ ନେଇ ଆସି ନ ଥିଲୁ । କିମ୍ବା, ମଲା ପରେ କୌଣସି ଗୋଟାଏ ଜିନିଷ ସାଙ୍ଗରେ ନେଇ ଯିବା ନାହିଁ । ଏ ଲୋଟା ବି ସତ ଜିନିଷ ନୁହେଁ । ଏହା ଦିନେ ନଷ୍ଟ ହେବ । ତେଣୁ ଏହା ଏକ ମିଛିମିଛିକା ଜିନିଷ ।

ଆମ ଦେହ ବି ସଂସାରର ସବୁ ଜିନିଷ ପରି ଏକ ମିଛିମିଛିକା ଜିନିଷ । ଏହା ବଦଳୁଛି । ମଣିଷ ପିଲାରୁ ଯୁବକ ଓ ଯୁବକରୁ ବୁଢ଼ା ହେଉଛି । ଶେଷରେ ସେ ମରିଯାଉଛି । ତା' ଦେହ ନଷ୍ଟ ହୋଇଯାଉଛି । ଏବେ ବୁଝନ୍ତୁ । ନିଜ ଦେହ ଯଦି ମଣିଷର ନିଜର ହୋଇ ରହିପାରିଲା ନାହିଁ, ଛାର ସୁନା ଲୋଟାଟାଏ ତାର ହେବ କିପରି ? ଏଠି ଗୋଟାଏ କଥା ଆମର ବୁଝିବା ଆବଶ୍ୟକ । ମୋ' ଦେହ ବଦଳୁଛି, ନଷ୍ଟ ହେଉଛି । କିନ୍ତୁ ତା' ଭିତରେ ଥିବା 'ମୁଁ' ବଦଳୁ ନାହିଁ, କି ନଷ୍ଟ ହେଉନାହିଁ । ଏଇ ମୁଁ ହେଲା ଆତ୍ମା । ଏହା ଶରୀର ନୁହେଁ । ଆତ୍ମା ସ୍ଥାୟୀ । ଏହା ଆଗେ ଥିଲା, ଏବେ ଅଛି, ସବୁବେଳେ ଥିବ । ଦେହ ଅସ୍ଥାୟୀ । ଆଜି ଅଛି,କାଲି ନ ଥିବ ।

ଦେହକୁ 'ମୁଁ' ବୋଲି ଭାବିବା ଭୁଲ । କାରଣ ଦେହ ନଷ୍ଟ ହେଲେ ବି ଏଇ 'ମୁଁ' ବା ଆତ୍ମା ନଷ୍ଟ ହୁଏ ନାହିଁ । ଆମେ ଦେହ ଭିତରେ ଥିବା ଏହି ଆତ୍ମାକୁ ଚିହ୍ନିବା ଦରକାର । ଆଗେ ଆତ୍ମାକୁ ଜାଣିଲେ ପରେ ଆମେ ପରମାତ୍ମାଙ୍କୁ ଜାଣିପାରିବା । କାରଣ ଆତ୍ମା ପରମାତ୍ମାଙ୍କ ଅଂଶ । ତାଙ୍କଠାରୁ ଆସିଛି । ଦେହର ମୋହ କଟିଗଲେ ଆମେ ନିଜ ଆତ୍ମାକୁ ଦେଖିପାରିବା । ଆଉ ଆତ୍ମା ସାହାଯ୍ୟରେ ପରମାତ୍ମାଙ୍କୁ ନିଜ ଭିତରେ ଅନୁଭବ କରିପାରିବା । ସବୁର ମୂଳରେ ଅଛନ୍ତି ପରମାତ୍ମା ।

ପଣ୍ଡିତମାନଙ୍କ ନିଷ୍ପତ୍ତି ଅନୁସାରେ ସୁନାଲୋଟାଟି ଗୋପାଳଜୀ ମନ୍ଦିରକୁ ପଠାଇ ଦିଆଗଲା । ପଣ୍ଡିତମାନେ ଶରୀର, ଜୀବାତ୍ମା ଓ ପରମାତ୍ମା ବିଷୟରେ ଯାହା କହିଲେ, ତାହା ଗୀତାର ଅଧ୍ୟାୟ - ୧୫ର ସାରକଥା ।

★★★

# ଅଧ୍ୟାୟ - ୧୬

# ଦୁର୍ଗୁଣରୁ ଦୂରେଇ ରହ

ରାମାୟଣର କଥାଟିଏ : ଜଣେ ସାଂଘାତିକ ଡକାୟତ ଥିଲା । ତା ନାଁ ରତ୍ନାକର । ସେ ବଣ ବାଟରେ ଲୁଚି ରହି ବାଟୋଇମାନଙ୍କୁ ଆକ୍ରମଣ କରେ । ସେମାନଙ୍କ ଜିନିଷ ଲୁଟି ନିଏ । ଅନେକଙ୍କୁ ପ୍ରାଣରେ ମାରିଦିଏ । ଏମିତି ଧନ୍ଦା କରି ସେ ତା' ପରିବାର ପୋଷେ ।

ଦିନେ ନାରଦ ସେଇ ବାଟ ଦେଇ ଯାଉଥାନ୍ତି । ବାବାଜୀଟାଏ ପାଖରେ ଧନଗନ୍ଧ କ'ଣ ଅବା ଥାଆନ୍ତା ? ତଥାପି ରତ୍ନାକର ଲୋଭରେ ନାରଦଙ୍କୁ ଅଟକାଇ କହିଲା - ପାଖରେ ଯାହା ଅଛି ଦେଇଯା' । ତା' ନ ହେଲେ ତୋ' ତଣ୍ଟି ଚିପି ମାରିଦେବି ।

ନାରଦ ମୁରୁକି ହସି କହିଲେ - ମୋତେ ମାରିବଟି ? ମାର, ମୁଁ ମନା କରୁନି । ତେବେ ବୁଝିବିଚାରି ମୋର ଏଇ ପ୍ରଶ୍ନର ଉତ୍ତର ଦିଅ । ତୁମେ ଡକାୟତି କରୁଛ । ମଣିଷ ମାରୁଛ । ଏତେ ପାପ କରୁଛ କାହିଁକି ?

ରତ୍ନାକର କହିଲା - ପାପ ! ସେଟା କେମିତିକା ଜିନିଷ ? ପେଟ ପୋଷିବା ପାଇଁ ଯେଉଁ ଧନ୍ଦା ପାର, କରିଯାଅ । ପେଟ ପୋଷ, ନାହିଁ ଦୋଷ । ଏ କଥା ବୁଝିଛଟି ?

ନାରଦ କହିଲେ - କାମ ଦୁଇ ପ୍ରକାର : ଭଲ ଓ ମନ୍ଦ । ଅନ୍ୟର ଉପକାର କରିବା ପୁଣ୍ୟ କାମ । ଅନ୍ୟର ଅନିଷ୍ଟ କରିବା ପାପ କାମ । ତୁମେ ପରିବାର ପୋଷିବା ପାଇଁ ଏତେ ପାପ କରୁଛ । କିନ୍ତୁ ତୁମ ପରିବାରର କୌଣସି ଲୋକ ଏ ପାପରେ ଭାଗ ନେବାକୁ ଚାହିଁବେ ନାହିଁ ।

ରତ୍ନାକର କହିଲା - ନେବେନି କାହିଁକି ? ନିଶ୍ଚୟ ନେବେ । ସେମାନଙ୍କ ପାଇଁ ତ ମୁଁ ଏ କାମ କରୁଛି ।

ନାରଦ କହିଲେ - ତୁମେ ଘରକୁ ଯାଇ ଏ କଥା ସେମାନଙ୍କୁ ପଚାରି ବୁଝ । ତୁମେ ଆସିବା ଯାଏଁ ମୁଁ ଏଠି ଥିବି ।

ରତ୍ନାକର ଭାବିଲା, ବାବାଜୀ ତାକୁ ଠକି ଚାଲିଯିବ କି କ'ଣ । ତେଣୁ ସେ ତାଙ୍କୁ ଗୋଟାଏ ଗଛରେ ବାନ୍ଧି ଦେଇ ଘରକୁ ଗଲା । ଘରେ ଜଣ ଜଣ କରି ସମସ୍ତଙ୍କୁ ଏ କଥା ପଚାରିଲା । ହେଲେ ସମସ୍ତଙ୍କଠାରୁ ଗୋଟାଏ ଉତ୍ତର ଶୁଣିଲା । ସେମାନେ କହିଲେ - କୁଟୁମ୍ବ ପୋଷିବା ହେଲା ତୁମ କାମ । ତୁମେ ଯଦି ପାପ କଲ, ଆମେ ତାକୁ ବାଣ୍ଟି ନେବୁ କାହିଁକି ? ସବୁ ପାପ ତୁମର ।

ରତ୍ନାକର ନାରଦଙ୍କ ପାଖକୁ ଫେରି ଆସିଲା । ତାଙ୍କ ବନ୍ଧନ ଫିଟାଇ କହିଲା - ନା, କେହି ଜଣେ ସୁଦ୍ଧା ରାଜି ହେଲେ ନାହିଁ । ବାପାମା, ସ୍ତ୍ରୀ, ପୁଅଝିଅ, ସମସ୍ତେ ନିଜ ସୁଖସୁବିଧା ଦେଖୁଛନ୍ତି । ମୋ ଦୁଃଖକଷ୍ଟ କେହି ବୁଝୁ ନାହାନ୍ତି ।

ନାରଦ କହିଲେ - ତାହାହେଲେ ଏତେ ଏତେ ପାପର ବୋଝ ତୁମେ ଏକା ନେବ କାହିଁକି ? ମୋ କଥା ମାନ । ଆଜିଠାରୁ ଏ କାମ ଛାଡ଼ । ଏଠି ବସି ଏକ ଲୟରେ 'ରାମ' ନାମ ଜପ କର ।

ନାରଦଙ୍କ କଥାରେ ରତ୍ନାକରର ମନ ମାନିଗଲା । ସେ ସେଇଠି ବସି ରାମ ନାମ ଜପିବାକୁ ଲାଗିଲା । ଦିନ, ମାସ, ବର୍ଷ ବିତିବାକୁ ଲାଗିଲା । ତା' ଉପରେ ଉଈ (ବଲ୍ମୀକ) ହୁଙ୍କା ଉଠିଗଲା । ତଥାପି ଜପ ଚାଲିଥାଏ । ଶେଷରେ ରତ୍ନାକର ଦସ୍ୟୁ ନିଜ ତପ ବଳରେ ବାଲ୍ମୀକି ଋଷି ହୋଇଗଲେ । ସେ ରାମାୟଣ ରଚନା କରିଥିଲେ ।

ଗୀତାର ଅଧ୍ୟାୟ - ୧୬ର ସାରକଥା ଏହି କାହାଣୀର ସାରକଥା ପରି । ସଂସାରରେ ଦୁଇ ପ୍ରକାର ଲୋକ ଅଛନ୍ତି । ଦଳେ ଭାବନ୍ତି, ମୋ

ଦେହ ହିଁ ମୁଁ । ଏହା ଭାବି ସେମାନେ ନିଜ ପାଇଁ ସବୁ କାର୍ଯ୍ୟ କରନ୍ତି । କାମର ଫଳ ପାଇବାକୁ ଚାହିଁ ବସିଥାନ୍ତି । ଭଲ ଫଳ ହେଲେ ସୁଖୀ ହୁଅନ୍ତି । ଫଳ ନ ମିଳିଲେ କିମ୍ୱା ଓଲଟା ଫଳ ହେଲେ ଦୁଃଖୀ ହୁଅନ୍ତି । ଏମାନେ ହେଲେ 'ଅସୁର' ପ୍ରକୃତିର ଲୋକ ।

ଆଉ ଦଳେ ଲୋକ ଅଛନ୍ତି, ଯେଉଁମାନେ ଭାବନ୍ତି ଯେ, ପରମାତ୍ମା ସବୁ କରୁଛନ୍ତି । ସେମାନେ ନିଜ ପାଇଁ କାମ ନ କରି ଅନ୍ୟ ପାଇଁ କରନ୍ତି । କାମର ଫଳରେ ଆଶା ନ ରଖି ତାକୁ ଭଗବାନଙ୍କ ଉପରେ ଛାଡ଼ି ଦିଅନ୍ତି । ଏମାନେ ହେଲେ ଦେବ ପ୍ରକୃତିର ।

ଆମେ ନିଜର ଦୁର୍ଗୁଣ ଛାଡ଼ି ଭଗବାନଙ୍କ ଆଡ଼େ ମନ ଲଗାଇଲେ ଭଗବାନ ଆମକୁ ନିଜର କରିନେବେ ।

ସଂସାରରେ ଲକ୍ଷ ଲକ୍ଷ ପ୍ରକାର ଜୀବ ଅଛନ୍ତି । ତା' ଭିତରେ ଭଗବାନ କେବଳ ମଣିଷକୁ ବୁଦ୍ଧିବିବେକ ଦେଇଛନ୍ତି । ତେଣୁ ଆମେ ବୁଝିବିଚାରି କାମ କରିବା । ଭୁଲ ବାଟ ଛାଡ଼ି ଭଲ ବାଟରେ ଯିବା । ଅସୁର ନ ହୋଇ ସୁର ବା ଦେବତା ହେବା । ଆମ କାମକୁ ନେଇ, ଜାଣ, ଫଳ ମିଳିବ ।

ଦେବତା ହେବ ? ତେବେ ଏ ପ୍ରକାର କାମ କର : ସତ କହ । ଶାନ୍ତ ରହ । ପରୋପକାର କର । ଈଶ୍ୱରଙ୍କୁ ଜାଣ ଓ ଭକ୍ତି କର । ଯାହା ମିଳିଛି, ସେଥିରେ ସନ୍ତୁଷ୍ଟ ରହ ।

ଆଉ, ଅସୁରର ସ୍ୱଭାବ ଏମିତିକା : ସେ ଧନ, ମାନ ଓ କ୍ଷମତାର ବଡ଼ାଇ କରେ । ଅଧର୍ମ ବାଟରେ ଧନ ବଢ଼ାଏ । ଅନ୍ୟକୁ ହିଂସା କରେ । ପରର ଅନିଷ୍ଟ କରେ । ସେ କ୍ରୋଧୀ ଓ ନିଷ୍ଠୁର । ସତ କଥାରେ ପରତେ ଯାଏ ନାହିଁ । ଈଶ୍ୱରଙ୍କୁ ମାନେ ନାହିଁ । ସବୁବେଳେ ମନ୍ଦ କଥା ଭାବେ ଓ ମନ୍ଦ କାମ କରେ ।

ତେଣୁ, ତୁମେ ସୁର ହେବାପାଇଁ ଲାଗିପଡ଼ ।



# ଅଧ୍ୟାୟ - ୧୨

# ପ୍ରଭୁଙ୍କ ନାମ ନେଇ ଶୁଭ କାମ କର

ପଣ୍ଡିତ ହରିଶରଣ ଭାରି ଜ୍ଞାନୀ । ଦିନେ ସେ ତାଙ୍କର ଘରେ ବସି ଶିଷ୍ୟମାନଙ୍କୁ ପାଠ ପଢ଼ାଉଥାନ୍ତି । ସେ କହିଲେ - ପିଲାମାନେ, ମୋ' କଥା ଭଲ କରି ମନକୁ ନିଅ । ପରମାତ୍ମା ହେଲେ ସବୁକିଛି । ତାଙ୍କରି ଇଚ୍ଛାରେ ଏ ସଂସାର ଗଢ଼ି ଉଠିଛି । ତାଙ୍କରି ଇଚ୍ଛାରେ ଏହା ଚାଲିଛି । ଆମେ ସବୁ ତାଙ୍କରି ସନ୍ତାନ । ଏ ସଂସାରରେ ଥିବା ଆମ ପରିବାର, ଘର, ଧନସମ୍ପତ୍ତି କୌଣସିଟି ଆମର ନୁହେଁ । ଭଗବାନଙ୍କ ରହିବା ସ୍ଥାନ ହିଁ ଆମର ମୂଳ ଘର ।

ହଁ, ଆମେ ବାଟବଣା ହୋଇଯାଇଛେ । ନିଜ ଭୁଲ ଯୋଗୁଁ ମୂଳ ଘରକୁ ଯାଇପାରୁନା । ବାରମ୍ବାର ଏ ସଂସାରରେ ଜନ୍ମ ନେଇଥାଉଁ, ମରୁଥାଉଁ । ଆମେ ପରମାତ୍ମାଙ୍କୁ ଭୁଲିଯିବାରୁ ଆମର ଏ ଦଶା ହୋଇଛି । ଶ୍ରଦ୍ଧା ରଖି ତାଙ୍କୁ ମନେ ପକାଇବା ଆବଶ୍ୟକ । ମନ, ବୁଦ୍ଧି ସବୁ ତାଙ୍କଠି ଲଗାଇଦେବା ଦରକାର । ତାହାହେଲେ ଆମେ ଅସାଧ୍ୟ କାମ କରିପାରିବା । ଆମେ ପାଣି ଉପରେ ଚାଲିପାରିବା, ଆକାଶରେ ଉଡ଼ିପାରିବା ।

ଜଣେ ଶିଷ୍ୟ ପଚାରିଲା - ଗୁରୁଦେବ, ସତରେ କଣ ଏମିତି ହୋଇପାରିବ ?

ପଣ୍ଡିତ ହରିଶରଣ କହିଲେ - ନିଶ୍ଚୟ ହେବ । ତେବେ ତୁମେ ନିଜକୁ ଭୁଲିଯାଇ ମନପ୍ରାଣ ଦେଇ ଭଗବାନଙ୍କୁ ଡାକିଲେ ଯାଇ ହେବ ।

ଏତିକିବେଳେ ଦଶ ବର୍ଷର ଝିଅଟିଏ ପାଖରେ ବସି ପଣ୍ଡିତଙ୍କ କଥା ଶୁଣୁଥିଲା । ତା ନାଁ କମଳା । ପଣ୍ଡିତଙ୍କ ଘରେ ଦୁଧ ବିକ୍ରି କରିବାକୁ ଆସିଥିଲା । ନିତି ଡଙ୍ଗାରେ ନଈ ପାରି ହୋଇ ତା' ଗାଁରୁ ଏ ଗାଁକୁ ଆସି ଦୁଧ ବିକେ । ପଣ୍ଡିତଙ୍କ କଥା ଶୁଣି କମଳା ଭାବିଲା - ମୁଁ ମନପ୍ରାଣ ଦେଇ ରାମଙ୍କୁ ଡାକିବି । ତାହାହେଲେ ନଈ ପାଣିରେ ଚାଲି ଚାଲି ଆର ପାରିକୁ ଚାଲିଯିବି । ମୋତେ ଆଉ ଡଙ୍ଗା ଭଡ଼ା ପଇସା ଦେବାକୁ ପଡ଼ିବ ନାହିଁ ।

କମଳା ଆଖି ବୁଜି ଏକ ଲୟରେ ରାମଙ୍କୁ ଧ୍ୟାନ କରି ନଈ ପାଣିରେ ପଶିଲା । ଆଶ୍ଚର୍ଯ୍ୟ କଥା । ସେ ଭୂଇଁ ଉପରେ ଚାଲିଲା ପରି ପାଣି ଉପରେ ଚାଲି ଚାଲି ନଈ ପାରି ହୋଇଗଲା । ଏମିତି ସେ ନିତି କରିବାକୁ ଲାଗିଲା ।

ସତ କଥା ସବୁ ଦିନ ଲୁଚି ରହେ ନାହିଁ । ଏ କଥା ପଣ୍ଡିତ ହରିଶଙ୍କରଙ୍କ କାନକୁ ଗଲା । ଦିନେ ସେ କମଳା ପଛେ ପଛେ ଆସି ଦେଖିଲେ, ସେ ପାଣି ଉପରେ ଚାଲି ଚାଲି ଯାଉଛି । ସେ ପାଟି କଲେ - କମଳା, ରହ । ମୁଁ ବି ତୋ' ସାଙ୍ଗରେ ଯିବି ।

ଏହା କହି ପଣ୍ଡିତ ରାମଙ୍କୁ ମନେ ମନେ ଡାକିବାକୁ ଲାଗିଲେ । କିନ୍ତୁ ତାଙ୍କ ମନ ଟାଣ ନ ଥିଲା । ତେଣୁ ସେ ପାଣିରେ ଚାଲି ନ ପାରି ଏ ପାରିରେ ରହିଗଲେ । କମଳା ଆର ପଟେ ଥାଇ ହସି ହସି କହିଲା - ଗୋସେଇଁ, ତୁମଠାରୁ ଶିଖି ମୁଁ ଭଗବାନଙ୍କଠାରେ ମନ ଲଗାଇ ପାରୁଛି । ତୁମେ କହି ଜାଣିଛ, କାମରେ ଲଗାଇ ଜାଣିନାହଁ ।

କମଳା କଥା ଶୁଣି ପଣ୍ଡିତ ଲାଜରେ ମୁଣ୍ଡ ପୋତିଦେଲେ ।

ଏଥିରୁ ଆମେ କଣ ବୁଝିବା ? ପଣ୍ଡିତ ହରିଶଙ୍କରଙ୍କଠାରେ ଜ୍ଞାନ ଥିଲା । କିନ୍ତୁ ତାଙ୍କଠାରେ ଜ୍ଞାନର ଗର୍ବ ଥିଲା । ସେ ଭଗବାନଙ୍କଠି ଦୃଢ଼ଭାବେ ମନ ଲଗାଇ ପାରୁ ନ ଥିଲେ । କିନ୍ତୁ କମଳା ଛୋଟ ଝିଅଟିଏ ।

ତାଠାରେ ସେମିତି ଜ୍ଞାନ ନଥିଲା । ତଥାପି ସେ ତା' ମନକୁ ଭଗବାନଙ୍କଠାରେ ଲଗାଇ ପାରୁଥିଲା ।

ମଣିଷ ଭିତରେ ସତ୍ତ୍ୱ, ରଜ, ତମ, ଏମିତି ତିନୋଟି ଗୁଣ ଥାଏ । ଯେଉଁ ଲୋକଠାରେ ଯେଉଁ ଗୁଣ ଅଧିକ ଥାଏ, ସେ ସେଇ ଭଳି ଆଚରଣ କରେ । ଏପରିକି, ମଣିଷ ଯେଉଁ ଗୁଣ ଅଧିକ ଥାଇ ଜନ୍ମ ନିଏ, ତା' ଅନୁସାରେ ତାର ଶ୍ରଦ୍ଧା ହୋଇଥାଏ । ସେଇ ଗୁଣ ଅନୁସାରେ ତା' ମନ ଚାଲେ । ତା' ଅନୁସାରେ ସେ ଆଚରଣ କରେ । ସେହି ଅନୁସାରେ ବି ସେ କାମ କରେ ।

ତୁମେ ଜ୍ଞାନୀ ହୋଇପାର । କିନ୍ତୁ ସେଥିପାଇଁ ଅହଙ୍କାର କଲେ ଭଗବାନଙ୍କୁ ପାଇବ ନାହିଁ । ବରଂ ଅନ୍ୟ ପାଇଁ କାମ କରି ଭଗବାନଙ୍କଠି ମନ ଲଗାଇବା ଭଲ । ପ୍ରଭୁଙ୍କୁ ମନେ ପକାଇ ଭଲ କାମ କର । ଅତି ନୀଚ ଲୋକ ବି ଭଗବାନଙ୍କଠାରେ ଦୃଢ଼ଭାବେ ମନ ଲଗାଇଦେଲେ, ତାଙ୍କୁ ନିଜର କରିପାରିବ । ଗୀତାର ଅଧ୍ୟାୟ - ୧୭ର ସାରକଥା ଏ ପ୍ରକାର ।

ବ୍ରତଉପବାସ, ଜପତପ, ପୂଜାପାଠ, ଦାନଧର୍ମ, ପରୋପକାର ଆଦି ଭଲ କାମ । କିନ୍ତୁ ଆଜିକାଲି ଅନେକ ସ୍ଥାନରେ ଏସବୁ ଲୋକଦେଖାଣିଆ ହେଉଛି । ଉପବାସ ବେଳେ ସାମାନ୍ୟ ପୂଜା ଜିନିସ ହିଁ ଆହାର କରିବା । ମନ ଶାନ୍ତ ରଖିବା । ଜପତପ, ପୂଜାପାଠ ଆଦିରେ ମନ ଲଗାଇବା । ପ୍ରତ୍ୟେକ ଶୁଭ କାମ ଆରମ୍ଭରେ 'ଓଁ ତତ୍ ସତ୍' ବୋଲିବା । ଠିକ୍ ଲୋକକୁ ଦାନ ଦେବା । ମନରେ ଦାନର ଗର୍ବ ରଖିବାନି । ଉପକାର ବଦଳରେ ଅନ୍ୟଠାରୁ କୌଣସି ସୁବିଧା ମାରିନେବା ନାହିଁ । ମୋଟ ଉପରେ ଭଗବାନଙ୍କୁ ସ୍ମରଣ କରି ଶ୍ରଦ୍ଧାରେ ଶୁଭ କାମମାନ କରିଯିବା ।

★★★

# ଅଧ୍ୟାୟ - ୧୮

# ପାପରୁ ରକ୍ଷା ପାଇବା ଉପାୟ

ଗୋଟିଏ ସହରରେ ଜଣେ ମୋଚି ରହୁଥିଲା । ନିତି ଛେଳି ମାରି ମାଂସ ବିକ୍ରୀ କରେ । ଲୋକମାନେ ତା' ଠାରୁ ମାଂସ କିଣି ନେଉଥିଲେ । କିନ୍ତୁ ତାକୁ ଛୋଟ ମନେ କରୁଥିଲେ । କାରଣ ସେ ଜାତିରେ ଛୋଟ ଥିଲା । ପୁଣି ନିତି ଛେଳି ମାରି ବହୁତ ପାପ କରୁଥିଲା ।

ଥରେ କାଶୀରେ ବହୁତ ବଡ଼ ମେଳା ପଡ଼ିଥାଏ । କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରି ଧର୍ମ ଅର୍ଜିବା ପାଇଁ ଲକ୍ଷ ଲକ୍ଷ ଲୋକ ଭିଡ଼ ଜମେଇଥାନ୍ତି । ତୀର୍ଥଯାତ୍ରୀମାନେ ଆଗେ ଗଙ୍ଗାରେ ସ୍ନାନ କରି ମନ୍ଦିରକୁ ଯାଉଥାନ୍ତି । ମନ୍ଦିରକୁ ଯିବା ବାଟରେ ଗୋଟିଏ ବଡ଼ ବରଗଛ ଥିଲା । ସେଇ ଗଛ ମୂଳରେ ଲୋକଟିଏ ମରି ପଡ଼ିଥାଏ । ତା' ପାଖରେ ତା' ସ୍ତ୍ରୀ ବସି କାନ୍ଦି କାନ୍ଦି କହୁଥାଏ - ଦୟା କର, ଭାଇ ! ମୋ ସଂସାର ସରିଗଲା । ମୋ ସ୍ୱାମୀଙ୍କୁ ଶ୍ମଶାନକୁ ନେଇ ଟିକେ ସତ୍କାର କରିଦିଅ । ତୁମର ବହୁତ ଧର୍ମ ହେବ ।

ଲୋକମାନେ ଶବକୁ ଦେଖୁଥିଲେ । ସ୍ତ୍ରୀଟିର ବିକଳ କାନ୍ଦଣା ଶୁଣୁଥିଲେ । ହେଲେ ସେଠୁ ମୁହଁ ଫେରାଇ ନେଇ ମନ୍ଦିର ଆଡ଼େ ଚାଲିଯାଉଥିଲେ । ସକାଳ ଗଲା । ଦିପହର ହେଲା । ତାପରେ ଛାଇ ଲେଉଟିଲା । ଚାହୁଁ ଚାହୁଁ ବେଳ ବୁଡ଼ିଗଲା । ଧୀରେ ଧୀରେ ମେଳାରେ ଯାତ୍ରୀଙ୍କ ଭିଡ଼ କମି ଆସିଲା । ଶବ ପାଖରେ ବସି ସ୍ତ୍ରୀ ଲୋକଟି ସେମିତି ଲୁହ ଢାଳି ନେହୁରା ହୋଇ କହୁଥାଏ ।

ସଞ୍ଜ ପଡ଼ିବା ବେଳକୁ ସହରର ସେଇ ମୋଚିଟି ଆସି ସେଠି ପହଞ୍ଚିଲା । ଛୋଟ ଲୋକ ସେ । ମନ୍ଦିର ଭିତରକୁ ଯାଇପାରିବ ନାହିଁ । ଗଙ୍ଗାରେ ଟିକେ ବୁଡ଼ି ସାରି ମନ୍ଦିର ବାହାରେ ମୁଣ୍ଡିଆ ମାରି ଘରକୁ ଫେରିଯିବ ବୋଲି ଭାବିଥିଲା । କିନ୍ତୁ ସ୍ତ୍ରୀଟିର କାନ୍ଦ ଦେଖି ତା' ଆଖିରୁ ଲୁହ ଗଡ଼ିଗଲା । ଠିକ୍ କଲା, ତା' ପାଖରେ ଥିବା ପଇସାରେ କାଠ କିଣି ଶବ ଦାହ କରିଦେବ ।

ମୋଚି ଶବକୁ ତଳୁ ଉଠାଇଲା । କାନ୍ଧରେ ତାକୁ ଲଦିବାକୁ ଗଲାବେଳେ ହଠାତ୍ ଆଗରେ ବିଜୁଳି ପରି ଏକ ଆଲୋକ ଦେଖାଗଲା । ତା' ପାଖରୁ ଶବଟା କୁଆଡ଼େ ଉଭେଇଗଲା । କାନ୍ଦୁଥିବା ସ୍ତ୍ରୀ ଲୋକଟି ବି ଦେଖାଗଲା ନାହିଁ । ସେ ଦେଖିଲା, ତା' ଆଗରେ ହସହସ ମୁହଁରେ ଠିଆ ହୋଇଛନ୍ତି ପ୍ରଭୁ ବିଶ୍ୱନାଥ ଓ ମା' ପାର୍ବତୀ । ପ୍ରଭୁ ବିଶ୍ୱନାଥ କହିଲେ - ଆମେ ଦିହେଁ ଶିବ ପାର୍ବତୀ । ତୀର୍ଥଯାତ୍ରୀଙ୍କୁ ପରୀକ୍ଷା କରିବା ପାଇଁ ଶବ ଓ ସ୍ତ୍ରୀ ବେଶ ଧରିଥିଲୁ । କେବଳ ଗଙ୍ଗାରେ ଗାଧୋଇଲେ ଓ ମୋର ଦର୍ଶନ କରିଦେଲେ ପୁଣ୍ୟ ଅର୍ଜିବ ନାହିଁ । ଧର୍ମକୁ ଆଚରଣ କରାଯାଏ । କଲେ ହିଁ ପ୍ରକୃତରେ ପୁଣ୍ୟ ହୁଏ । ତୁମେ ମୋର ପ୍ରକୃତ ଭକ୍ତ । ତୁମେ ସୁଖୀ ହୁଅ । ମଲା ପରେ ସ୍ୱର୍ଗରେ ସ୍ଥାନ ପାଇବ । ଏହା କହି ଶିବପାର୍ବତୀ ଅଦୃଶ୍ୟ ହୋଇଗଲେ ।

କଥା ଏଠି ଶେଷ ହେଲା । ତେବେ ଏ କଥାରୁ ଆମେ କଣ ଶିଖିବା ? ଆମେ କେଉଁ ଜାତିରେ, ଦେଶରେ, ଅବସ୍ଥାରେ ଜନ୍ମ ହେଲେ କିଛି ଯାଏଆସେ ନାହିଁ । ଆମର ଭାବନା, ଭାଷା, ଆହାର ଓ ଆଚରଣ ଶୁଦ୍ଧ ହେବା ଉଚିତ । ଆମର ବୁଝିବା ଦରକାର, ଆମେ ଦେହ ନୋହୁଁ । ଆମେ ଅମର ଆତ୍ମା । ଆମେ ପରମାତ୍ମାଙ୍କ ଅଂଶ । ତାଙ୍କଠାରୁ ଆସିଛୁ । ତାଙ୍କ ପାଖକୁ ଚାଲିଯିବୁ ।

ହଁ, ଦୃଢ଼ଭାବେ ଏତିକି କହ : ହେ ପରମାତ୍ମା, ମୁଁ ତୁମର । ଆଉ, ତୁମେ ମୋର । ତୁମେ ମୋତେ ଘର, ପରିବାର ଦେଇଛ । ସମାଜ

ଦେଇଛ । କର୍ତ୍ତବ୍ୟ ଦେଇଛ । ତୁମରି ଇଚ୍ଛାରେ ହିଁ କର୍ତ୍ତବ୍ୟ କରୁଛି । କିନ୍ତୁ ତୁମ ଛଡ଼ା ଏଠି ମୋର ସାହାଭରସା କେହି ନାହିଁ । ତୁମେ ମୋର ସବୁକିଛି । ମୁଁ ନିଜକୁ ତୁମଠାରେ ପୂରାପୂରି ସମର୍ପି ଦେଉଛି । ଗୀତାର ଶେଷ ଅଧ୍ୟାୟ - ୧୮ର ସାରକଥା ଏ ପ୍ରକାର ।

ଶ୍ରୀକୃଷ୍ଣଙ୍କ ଠାରୁ ସବୁ ଶୁଣି ଶେଷରେ ଅର୍ଜୁନ ନିଜକୁ ଏହିପରି ଶ୍ରୀକୃଷ୍ଣଙ୍କଠାରେ ନିଜକୁ ଅର୍ପଣ କରିଦେଲେ । ତାପରେ ସେ ଭଗବାନ ଶ୍ରୀକୃଷ୍ଣଙ୍କ ଇଚ୍ଛାରେ କର୍ତ୍ତବ୍ୟ କରିବାକୁ ଯାଇ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ ।



# ଆମେ କଣ କରିବା ?

ଗୀତାର ଅଠର ଅଧ୍ୟାୟ ଶେଷ ହେଲା; । ପ୍ରତ୍ୟେକ ଅଧ୍ୟାୟର ସାରକଥା ଆମେ ଟିକିଏ ବୁଝିଲେ । ଏ ସଂସାରରେ ରହି ଆମେ କ'ଣ କରିବା, କେମିତି ଚଳିବା, ସେ ବିଷୟରେ ଏଠି ମୋଟାମୋଟି ଭାବେ ଟିକିଏ ବୁଝିବା ।

ବେଦ, ଉପନିଷଦ ଓ ଗୀତାର ମୂଳ କଥା ଦୁଇଟି : ସତ୍ ଓ ଅସତ୍ (ସତ ଓ ମିଛ) । ଯାହା ବଦଳେ, ନଷ୍ଟ ହଏ, ତାହା ମିଛ । ଏ ସଂସାର, ଏଥିରେ ଥିବା ସବୁ ଜିନିଷ, ଏମିତିକି ଆମ ଦେହ ବି ବଦଳୁଛି ଓ ନଷ୍ଟ ହେଉଛି । ତେଣୁ ଏସବୁ ମିଛ । ଯାହା ସବୁବେଳେ ଥାଏ, କେବେ ବଦଳେ ନାହିଁ କି ନଷ୍ଟ ହୁଏ ନାହିଁ, ତାହା ସତ । ଆମ ଦେହ ମିଛ । କିନ୍ତୁ ଏହାର ମାଲିକ ବା କର୍ତ୍ତା 'ଆତ୍ମା' ସତ । ଏ ସଂସାର ମିଛ । କିନ୍ତୁ ଏହାର କର୍ତ୍ତା ବା ମାଲିକ 'ପରମାତ୍ମା' ସତ । ସଂସାର ଓ ଶରୀର ଦିନେ ନଷ୍ଟ ହେବ, ପୁଣି ଗଢ଼ା ହେବ । କିନ୍ତୁ ଆତ୍ମା ନଷ୍ଟ ହେବ ନାହିଁ, କି ଗଢ଼ା ହେବ୍ ନାହିଁ । ଏହା ଆଗେ ଥିଲା, ଏବେ ଅଛି ଓ ସବୁବେଳେ ଥିବ । ଆଉ ପରମାତ୍ମା ଭଗବାନ ସବୁକାଳରେ, ସବୁଠି ଥିଲେ, ଅଛନ୍ତି ଓ ଥିବେ ।

ଆମର ପାଞ୍ଚଟି ଇନ୍ଦ୍ରିୟ ଦ୍ୱାରା ଆମେ ସବୁ କାମ କରୁ । ଆଖିରେ ଦେଖୁ, କାନରେ ଶୁଣୁ, ନାକରେ ଶୁଙ୍ଘୁ, ଜିଭରେ ସ୍ୱାଦ ଜାଣୁ ଓ କଥା କହୁ ଏବଂ ଚମରେ ଛୁଆଁ କଥା ବୁଝୁ । ଏସବୁ ଇନ୍ଦ୍ରିୟ ସାହାଯ୍ୟରେ ସଂସାରର କଥା ବୁଝୁ । କିନ୍ତୁ ଏହା ଦେହି ଆମେ ଆତ୍ମା କି ପରମାତ୍ମାଙ୍କୁ

ଦେଖି ପାରୁନା, କି ତାଙ୍କ କଥା ଶୁଣିପାରୁନା । ତେବେ ଆତ୍ମା ଓ ପରମାତ୍ମା ଅଛନ୍ତି ବୋଲି କେମିତି ବିଶ୍ୱାସ କରିବା ?

ଠିକ୍ ଅଛି । ତୁମେ କେବେ ଆମେରିକା ଦେଖିନାହଁ । ଆମ ଏଠି ଦିନ ହେଲା ବେଳେ ସେଠି କୁଆଡ଼େ ରାତି ହୁଏ । ଆମ ପୃଥିବୀ ଗୋଲ । ଏହା ସୂର୍ଯ୍ୟ ଚାରିପଟେ ଘୂରୁଛି । ଏହା ବି ତୁମେ ଦେଖିନାହଁ । ଏ ବିଷୟ ଭୂଗୋଳ ବହିରେ ପଢ଼ିଛ । ଶିକ୍ଷକମାନେ ବି କହୁଛନ୍ତି । ତାକୁ ତୁମେ ସତ ବୋଲି ବିଶ୍ୱାସ କରୁଛ । ସେମିତି ବେଦ, ଉପନିଷଦ ଆଦି ଗ୍ରନ୍ଥ ଓ ଋଷିମୁନିମାନେ କହୁଛନ୍ତି ଯେ ଆତ୍ମା ଓ ପରମାତ୍ମା ସର୍ବଦା ଅଛନ୍ତି । ଏଥିରେ ଆମେ ବିଶ୍ୱାସ ନ ଯିବା କାହିଁକି ?

ଆଉ କଥାଟିଏ ମନକୁ ନିଅ । ଆମ ଆଖିରେ ଯେତେ ଜିନିଷ ପଡ଼େ, ତାକୁ କେହି ନା କେହି ଗଢ଼ିଛନ୍ତି । ଘର, ଆସବାବ, ଯନ୍ତ୍ରପାତି ଆଦି ଜିନିଷ ମଣିଷ ଗଢ଼ିଛି । ନଦୀ, ସମୁଦ୍ର, ପର୍ବତ ଗଢ଼ିଛି କିଏ ? ସୂର୍ଯ୍ୟ ଚନ୍ଦ୍ରଙ୍କୁ ଆକାଶରେ ରଖିଛି କିଏ ? ତାଙ୍କୁ ଆମେ ଦେଖିପାରୁନା । ସେ ଏକ ଅଦୃଶ୍ୟ ଶକ୍ତି । ସେ ହିଁ ପରମାତ୍ମା ଭଗବାନ ।

ବଳ, ବୁଦ୍ଧି, ରୂପ, ଧନ ଆଦି ସବୁ ମଣିଷ ପାଖରେ ସମାନ ଭାବରେ ନଥାଏ । କିଏ କେଉଁଥିରେ ଅଧିକ । ସବୁଠାରୁ ବଳୁଆ ମଣିଷ ହେଉଛି ଜଣେ । ସବୁଠାରୁ ବୁଦ୍ଧିଆ ମଣିଷ ଆଉ ଜଣେ । ସେହିପରି ସବୁଠାରୁ ଅଧିକ ସୁନ୍ଦର କି ଧନୀ ଲୋକ ଅଲଗା ଜଣେ । କିନ୍ତୁ ଏସବୁ ଭଗବାନଙ୍କଠାରେ ସବୁଠାରୁ ଅଧିକ ମାତ୍ରାରେ ଥାଏ । ସେଥିପାଇଁ ତାଙ୍କୁ କିଏ ଧନ ମାଗେ, ଆଉ କିଏ ବିଦ୍ୟା ମାଗେ । ଏଥିରୁ ଆମେ ଗୋଟିଏ କଥା ଶିଖିବା । କୌଣସି ଜିନିଷ ଆମ ପାଖରେ ଅଧିକ ଥିଲେ ଆମେ ସେଥିପାଇଁ ଗର୍ବ କରିବା ଠିକ୍ ନୁହେଁ ।

ରୋଗୀଟିଏ । ଶେଷ ଅବସ୍ଥା । ଡାକ୍ତର କହିଲେ, ମରିଗଲା । ରୋଗୀ ପୁଣି ଜୀଇଁ ଉଠିଲା । ତାକୁ ବଞ୍ଚାଇଲା କିଏ ? ସେ ହିଁ ଭଗବାନ ।

ବାଡ଼ିବଗିଚାରେ ମଣିଷ ଏକପ୍ରକାର ଗଛକୁ ଏକାଠି ଖଣ୍ଡେ ଖଣ୍ଡେ ଜମିରେ ସଜାଇ ଲଗାଏ । ଏହାକୁ କ୍ରମସଜ୍ଜା କହନ୍ତି । ବଣରେ ଏଣେତେଣେ ଗଛ ଉଠିଥାଏ । ସେଥିରେ କ୍ରମସଜ୍ଜା ନାହିଁ । ତାକୁ ମଣିଷ କରିନାହିଁ । ଏହା ଭଗବାନ କରିଛନ୍ତି ।

ଆମେ ଅନେକ କାମରେ ଲାଗିଥାଉଁ । କେଉଁ କାମ ଠିକ୍ ଫଳ ଦିଏ । ତାହା ଆମେ କଲୁ ବୋଲି ଛାତି ଫୁଲାଇ କହୁ । କାମରେ ବିଫଳ ହେଲେ ଆମେ ଅନ୍ୟ ଲୋକ କିମ୍ବା ପରିସ୍ଥିତି ଉପରେ ଦୋଷ ଲଦି ଦେଉ । ଏଠି କଥାଟା ଠିକ୍ ବୁଝ । କାମ କରିଯାଅ । ଫଳ କଥା ଭାବ ନାହିଁ । ଫଳ ଦେଲାବାଲା ଭଗବାନ । ଫଳରେ ସୁଖୀ କି ଦୁଃଖୀ ହୁଅ ନାହିଁ । କଥାଟା ଟିକେ ମନକୁ ନିଅ । ଭଗବାନ ହିଁ ସଭିଙ୍କ ମାଲିକ । ତା' ନ ହୋଇଥିଲେ ତୁମ କାମର ଫଳ ତୁମ ଇଚ୍ଛା ଅନୁଯାୟୀ ପାଇଯାନ୍ତ ।

ମନୁଷ୍ୟ ମଲା ପରେ ପୁଣି ଜନ୍ମ ନିଏ । ସେ ତା' ପୂର୍ବ ଜନ୍ମର କର୍ମଫଳ ଭୋଗ କରେ । କେତେକ ପିଲା ତାଙ୍କ ପୂର୍ବ ଜନ୍ମର କଥା କହି ପକାନ୍ତି । ଜଣେ ଶିକ୍ଷକ ଏକ ପ୍ରକାର ପାଠ ଏକ ସମୟରେ ପଚାଶ ପିଲାଙ୍କୁ ପଢ଼ାନ୍ତି । କିନ୍ତୁ ପିଲାମାନଙ୍କ ଗ୍ରହଣ ଶକ୍ତି ଭିନ୍ନ ଭିନ୍ନ । ପୂର୍ବ ଜନ୍ମର ସଂସ୍କାର ଭିନ୍ନ ଭିନ୍ନ ଥିବାରୁ ଏପରି ହୁଏ । ଏସବୁ କାରଣରୁ ଆତ୍ମା ଅଛି ବୋଲି ବିଶ୍ୱାସ ହୁଏ ।

ଗୀତାର ସାରକଥା ଭଲଭାବେ ମନକୁ ନିଅ । ନିଜ ଭିତରକୁ ଯାଅ । ନିଜକୁ ଦେଖ । ନିଜକୁ ଚିହ୍ନ । ତୁମେ ଦେହ କି ଆତ୍ମା ବୁଝ । ସବୁ ସମୟରେ ଘର ଜଞ୍ଜାଳରେ ବୁଡ଼ି ରହ ନାହିଁ । ନିରୋଳାରେ ବସି ପ୍ରତିଦିନ କିଛି ସମୟ ପରମାତ୍ମାଙ୍କୁ ପ୍ରାର୍ଥନା କର । ତାଙ୍କୁ କିଛି ମାଗ ନାହିଁ । କାରଣ ଭଗବାନ ଛାଏଁ ସମସ୍ତଙ୍କର ଆବଶ୍ୟକ ଜିନିଷ ଯୋଗାଇ ଦିଅନ୍ତି । କିନ୍ତୁ କାହାରି ଜଣକର ସବୁ ଇଚ୍ଛା ପୂର୍ଣ୍ଣ କରନ୍ତି ନାହିଁ । କାରଣ ଇଚ୍ଛାର ଶେଷ ନାହିଁ ।

ପରିବର୍ତ୍ତନ ସଂସାରର ନିୟମ । ଆଜିର କଥା କାଲି ନାହିଁ । ସୃଷ୍ଟି ବଦଳି ଚାଲିଛି । ଏତିକି ଭାବ : ଯାହା ହେଲା, ଭଲ ହେଲା । ଯାହା ହେଉଛି, ଭଲ ହେଉଛି । ଯାହା ହେବ, ତାହା ବି ଭଲ ହେବ । କୌଣସି କଥାରେ ଦୁଃଖ କର ନାହିଁ । ଏତିକି ବୁଝ : ତୁମେ କଣ ଆଣିଥିଲ, ଯାହା ହରାଇଦେଲ ? ତୁମେ କଣ ସୃଷ୍ଟି କରିଥିଲ, ଯାହା ନଷ୍ଟ ହୋଇଗଲା ? ତୁମେ ଯାହା ନେଲ, ଏଠାରୁ ହିଁ ନେଲ । ଯାହା ଦେଲ, ଏଠାରୁ ହିଁ ଦେଲ, ଯାହା ଆଜି ତୁମର ବୋଲି ଭାବୁଛ, ତାହା କାଲି ଆଉ କାହାର ଥିଲା । ଆସନ୍ତା କାଲି ଆଉ କାହାର ହୋଇଯିବ ।

ଖାଇବା, ପିଇବା, ଶୋଇବା, ପିଲାଛୁଆଙ୍କ ସହ ଚଳିବା, ଏ ସବୁ ପଶୁପକ୍ଷୀଙ୍କ କାମ । ମଣିଷ ଏହାରି ଭିତରେ ରହିଗଲେ ପଶୁପକ୍ଷୀଠାରୁ ଭଲ ହେଲା କେମିତି ? ପାଠ ପଢ଼ି କେତେକ ବିଷୟ ଜାଣିଗଲେ ଜ୍ଞାନ ହୋଇଗଲା ନାହିଁ ! ଆତ୍ମା ଓ ପରମାତ୍ମାଙ୍କ ବିଷୟରେ ଜ୍ଞାନ ହିଁ ପ୍ରକୃତ ଜ୍ଞାନ । ଏହା ହିଁ ମଣିଷକୁ ପଶୁଠାରୁ ଅଲଗା କରେ ।

ସଂସାରର ଜିନିଷ ଆମକୁ ସୁଖୀ କରିପାରିବ ନାହିଁ । ଶାନ୍ତି ଓ ସନ୍ତୋଷ ହିଁ ଆମକୁ ସୁଖୀ କରିପାରିବ । ଧନଜନ, କ୍ଷମତା, ପ୍ରଭୁତ୍ୱ ସବୁ ଥାଇ ଶାନ୍ତି ଓ ସନ୍ତୋଷ ନ ଥିଲେ ଆମେ ସୁଖୀ ହୋଇପାରିବା ନାହିଁ । ତେଣୁ ଆମର ଯାହା ଅଛି, ସେତିକିରେ ସନ୍ତୁଷ୍ଟ ରହିବା । ନ୍ୟାୟପୂର୍ଣ୍ଣଭାବେ ପରିଶ୍ରମ କଲେ ଭଗବାନ ନିଶ୍ଚୟ ଆମର ଆବଶ୍ୟକତା ପୂର୍ଣ୍ଣ କରିବେ । ହାତ ଯୋଡ଼ି ଭଗବାନଙ୍କୁ କହିବା, ହେ ପ୍ରଭୁ, ତୁମେ ଯାହା ଚାହୁଁଛ, ମୋତେ ତାହା ଦିଅ । ମୁଁ ଯାହା ଚାହୁଁଛି, ମୋତେ ତାହା ଦିଅ ନାହିଁ ।''

ଗୋଟାଏ ନିଛକ୍ ସତ କଥା ମନେ ରଖ । ତୁମେ କେହି ନ ଜାଣିବା ପରି କୌଣସି କାମ କରିପାରିବ ନାହିଁ । ଚୋରି, ହତ୍ୟା, ଲାଞ୍ଚମିଛ, ଅପମିଶ୍ରଣ ଆଦି କୁକାର୍ଯ୍ୟ କରିବା ଲୋକମାନେ ଭୁଲରେ ଭାବନ୍ତି ଯେ, ତାହା କେହି ଜାଣନ୍ତି ନାହିଁ । କିନ୍ତୁ ତାଙ୍କର ନିଜ ଆତ୍ମା ହିଁ

ସାକ୍ଷୀ । ନିଜ କର୍ମର ଫଳ ତା ଅନୁସାରେ ପର ଜନ୍ମରେ ସେମାନେ ନିଶ୍ଚୟ ପାଇବେ । କଲରା ମଞ୍ଜି ପୋତି ସେଥିରୁ ଅଙ୍ଗୁର ଫଳ ଆଶା କର ନାହିଁ ।

ଯଜ୍ଞ କରିବା, ପୁରାଣ ପଢ଼ିବା, ଶାସ୍ତ୍ର ପଢ଼ିବା, ତୀର୍ଥସ୍ଥାନକୁ ଯିବା, ବ୍ରତଉପବାସ ଆଦି କରିବା ଭଲ କାମ । କିନ୍ତୁ ଏହା ଲୋକ ଦେଖାଣିଆ ହେବା ଉଚିତ ନୁହେଁ । ଆଜିକାଲି ବହୁତ ଲୋକ ଗୋଟିଏ ପଟେ ଏମିତିକା କାମ କରି, ଅନ୍ୟ ପଟେ ନାନା ଅନୀତି କାମ କରନ୍ତି । ଏଠି ଗୋଟିଏ କଥା ବୁଝ । ପାପ ଓ ପୁଣ୍ୟ ଏକାଠି ରହିପାରିବେ ନାହିଁ । ଅନ୍ଧାର ଓ ଆଲୋକ ଏକାଠି ରହିପାରିବେ ନାହିଁ । ନ ଜାଣି ଭୁଲ କଲେ ତାହା କ୍ଷମଣୀୟ । କିନ୍ତୁ ଜାଣି ଭୁଲ କଲେ କ୍ଷମା ନାହିଁ । ତେଣୁ ମିଛିମିଛିକା ଧର୍ମାଚରଣ କରିବା ଠିକ୍ ନୁହେଁ ।

ଆମେ ଏ ସଂସାରରେ ରହିବା । ସନ୍ନ୍ୟାସୀ ହେବା ଆବଶ୍ୟକ ନାହିଁ । ଖଟି ଖାଇବା । ଠକି ଖାଇବା ନାହିଁ । କେବଳ ନିଜ ପାଇଁ ବଞ୍ଚିବା ନାହିଁ । ଅନ୍ୟର ମଙ୍ଗଳରେ ନିଜକୁ ଲଗାଇବା । ପ୍ରତିଦିନ ପ୍ରାର୍ଥନା କରିବା । ଆତ୍ମା ସହିତ ପରମାତ୍ମାଙ୍କୁ ଯୋଡ଼ିବାକୁ ଚେଷ୍ଟା କରିବା । ଧ୍ୟାନ କରିବା । ମନ ନ ଲାଗିଲେ ନିଜ ଶ୍ୱାସ ପ୍ରଶ୍ୱାସ ଆଡ଼େ ଧ୍ୟାନ ଦେବା । ତାହାହେଲେ ଆମ ମନ ଏକାଗ୍ର ହୋଇଯିବ । ଟିକିଏ ଟିକିଏ କରି ଆଗକୁ ବଢ଼ିବା । ଯେତେବେଳେ ସମୟ ମିଳିଲା, ଭଗବାନଙ୍କ ନାଁ ନେଉଥିବା । ମନେ ରଖିବା, ଭଗବାନ ବହୁତ ଦୟାଳୁ । ସେ ଆମକୁ ନିଶ୍ଚୟ ନିଜର କରିନେବେ ।

